# କଳାହାଣ୍ଡିରେ କଥାକାର



ଉତ୍ତମ କୁମାର ପ୍ରଧାନ

# କଳାହାଣ୍ଡିରେ କଥାକାର

( ଗଳ୍ପ ସଂକଳନ )

ଲେଖକ – ଶ୍ରୀ ଉତ୍ତମ କୁମାର ପ୍ରଧାନ

ପ୍ରଥମ ପ୍ରକାଶ – ନଭେମ୍ବର ୧୯୯୨

ପ୍ରଚ୍ଛଦ ଓ
ଅଳଙ୍କରଣ – ଛନ୍ଦାଚରଣ ଆଚାର୍ଯ୍ୟ

ମୁଦ୍ରଣ – ମ୍ୟାଗ୍ନମ୍ ପ୍ରିଣ୍ଟର୍ସ,
୨୦ ଜନପଥ, ବାପୁଜୀନଗର
ଭୁବନେଶ୍ୱର–୭୫୧ ୦୦୯

ସ୍ୱତ୍ୱାଧିକାର – ଶ୍ରୀମତୀ ରଂଜୁଶ୍ରୀ ରାଉତରାୟ
'ସଂକଳ୍ପ' ୪୩ ସହିଦନଗର
ମହର୍ଷି କଲେଜ ପାର୍ଶ୍ୱ
ଭୁବନେଶ୍ୱର–୭୫୧ ୦୦୭

ପ୍ରକାଶକ – ଇଷ୍ଟର୍ଣ୍ଣ ମିଡ଼ିଆ ଲିଃ
୧/୭୨ ନୂଆପଲ୍ଲୀ, ଭୁବନେଶ୍ୱର ୭୫୧ ୦୦୩

ପ୍ରାପ୍ତିସ୍ଥାନ: –
ଗ୍ରନ୍ଥାଳୟ, ଭୁବନେଶ୍ୱର,
ଓଡ଼ିଶା ବୁକ୍ ଷ୍ଟୋର, କଟକ
ଗ୍ରନ୍ଥ ମନ୍ଦିର, କଟକ

ମୂଲ୍ୟ—୪୦ଟଙ୍କା /-



## ୰ ରାଜ କିଶୋର ରାଉତରାୟ

"...ଉତ୍ତମ ! କଳାହାଣ୍ଡି ବିଷୟରେ ହିଁ ଲେଖ,
ପ୍ରତିଦିନ ଲେଖ, ଲେଖା କେବେ ବନ୍ଦ କରିବ ନି"

ମୁଁ କଣ ଜାଣିଥିଲି ଏଇ ଅମୃତ ବକ୍ତବ୍ୟ ହିଁ ହେବ
ଆପଣଙ୍କର ଶେଷ କଥା.......

ଉତ୍ତମ

# କଳାହାଣ୍ଡି ଓ କଥାକାର

'କଳାହାଣ୍ଡିରେ କଥାକାର' ପଢ଼ିବା ଆଗରୁ କଥାକାରର ନିଜ କଥାଟିଏ ଶୁଣନ୍ତୁ ।

୧୯୩୯ ମସିହା ଜାନୁଆରୀ ମାସର କଥା । କଳାହାଣ୍ଡି ଜିଲ୍ଲାରେ ଡୁଙ୍ଗରୀ ପଡା ନାମରେ ଚିକି ଗାଁଆଟିଏ । ଗୁରିଆଡ଼େ ଜଙ୍ଗଲ । ନିକଟରେ ପାହାଡ଼କୁ ଲାଗି ଧାନ ଅମଳ ପାଇଁ ଗୋଟାଏ ଫରଗୁ ଖଳା । ଦିନ ଗୋଟାଏ ହେବ, ହଳିଆମାନେ ଖାଇବାକୁ ଯାଇ ଥାଆନ୍ତି, ଗାଁଆର ଗୌନ୍ତିଆଙ୍କର ଦୁଇପୁଅ ବୟସ ତିରିଶ ଭିତରେ, ଖଳା ଜଗିଥାନ୍ତି । ଜଣଙ୍କର ନାମ ବିଦ୍ୟାଧର ଏବଂ ସାନଭଇର ନାମ କନ୍ଦର୍ପ । ପାଖ ପାହାଡରୁ ମାଙ୍କଡ ପଲ ଆସି ଖଳାରେ ଶୁଖୁଥିବା ବୁଟ, ମସୁରୀ ଆଉ ଧନିଆ ଗଛ ଓଟାରି ନିଅନ୍ତି । ବିଦ୍ୟାଧର ଠେଙ୍ଗାଟେ ଧରି ବୈଦେହୀଶ ବିଳାସର ଛାନ୍ଦଟିଏ ଗାଉ ଥାଆନ୍ତି ।

" ବୁଧ ବୁଧ ଯୁଦ୍ଧ ନପାଇଲା ଜନ ପ୍ରତିଜ୍ଞାରେ ଉଠେ ଜଳି ।
ବର୍ତ୍ତନ୍ତେ ଆଜକି କପିଗଣ ରଣମଧ୍ୟେ ଆମ୍ଭେ ଥିଲେ ମିଳି ସେ । ବୋଲେ !
ବୀରମାନେ ଗଜାନାଶ କଲେ ସେ । ବୋଲେ !
ବେଢ ଗଡ଼େ ଯାହାଟି ରଖିଲେ ସେ । ବୋଲେ "

ସଙ୍ଗୀତର ମୂର୍ଚ୍ଛନା ପାଖ ପାହାଡ ଦେହରେ ଧକ୍କା ଖାଇ ପ୍ରତିଧ୍ୱନିତ ହେଉଥାଏ । ମଝିରେ ଅନ୍ୟ ଏକ ପଦକୁ ବିଦ୍ୟାଧର ବୋଲିବା ଆଗରୁ ଘନ ଜଙ୍ଗଲ ମଧ୍ୟରୁ ଭାସି ଆସିଲା ଏକ ଗୁରୁଗମ୍ଭୀର ସ୍ୱର ।

ବୋଇଲା ! ବସିପୁରେ ବଶୀଭୂତ ବାମାରେ ଲଙ୍କେଶ ଯେ
ବିପତ୍ତି, ଉପତ୍ତି ଏ ସମ୍ପତ୍ତି ଗଲା ନାଶ ଯେ (୧)
ବୋଇଲା ! ବଂଶତରୁ ପଗବଂଶ ପଲ୍ଲବେ ତରୁଣ ଯେ
ବସନ୍ତ ରମ ବେଶରେ ହତ ପୁଣ ପୁଣ ଯେ (୨)
ବୋଇଲା ! ବ୍ୟାଧିଭବ ସୀତାଭବ, ହୃଦୟ ଉଦୟେ ଯେ
ବିଶେଷେ ଶେଷ ହେବାର ଉପାୟ ନପାଏ ଯେ (୩)

ବୋଇଲ ! ବଲ୍ଲଭୀ ଶ୍ରେଷ୍ଠତା ଲଭି ଭରସା ରସାଇ ଯେ
ବିହିତ ହିତ ଭେଷଜ ସଜନିତ ଏହି ଯେ (୪)
ବୋଇଲ ! ବ୍ୟାଧି ବୃଦ୍ଧି ସୀତା ମଧୁରତା ରତାମୃଅ ଯେ
ବିଭେ ବିଭୂତି ବିଭୂଷା କନ୍ୟାଦାନ ରଚ ଯେ (୫)

ନିଘଞ୍ଚ ବନ ଦେଶରୁ ଏପରି ଏକ ମଧୁର ସଙ୍ଗୀତରେ ଚକିତ ଦୁଇଭଙ୍କ ଖେଳା ଛାଡ଼ି ସେଇ ସଙ୍ଗୀତଉତ୍ସର ଦିଗରେ ଆଗେଇଲେ । କିଛି ଦୂରରେ, ବିଶାଳ ଏକ ଶାଳ ଗଛର ମୂଳକୁ ଆଉଜି ଗୀତ ଗାଉଥିବା ଅବସ୍ଥାରେ ଆବିଷ୍କାର କଲେ ଅତ୍ୟନ୍ତ ପଥଶ୍ରାନ୍ତ ଗୌରବର୍ଣ୍ଣ ଜଣେ ଯୁବକ ।

ଆଗନ୍ତୁକଙ୍କୁ ଦେଖି କ୍ଳାନ୍ତ ଯୁବକ କହିଲେ–"ବନ୍ଧୁ ! ମୁଁ ଶାକ୍ଷେତ୍ରର ଜଣେ ବ୍ରାହ୍ମଣ, ମୋର ନାମ ଭୁବନେଶ୍ୱର ମିଶ୍ର, ଦଣ୍ଡକାରଣ୍ୟ ମୋର ଲକ୍ଷ୍ୟ । ଅତ୍ୟନ୍ତ କ୍ଷୁଧା ଆଉ ତୃଷାରେ ଆଉ ଆଗେଇ ପାରୁନାହିଁ । କିଛି ଜଳଦାନ କରି ପାରିବ ?"

ବିନା ବାକ୍ୟ ବ୍ୟୟରେ ଦୁଇଭଇ ପାଛୋଟି ନେଲେ ପଥିକଙ୍କୁ । ସଙ୍ଗେ-ସଙ୍ଗେ ଖାଦ୍ୟ ପେୟର ବ୍ୟବସ୍ଥା ହେଲା ଅତିଥିଙ୍କ ପାଇଁ । ପରିତୃପ୍ତ ବ୍ରାହ୍ମଣ, ପରମ ଉଲ୍ଲାସରେ ଗାଇଲେ ଅନେକ ଛାନ୍ଦ ।

ଭଞ୍ଜପ୍ରେମୀ ଦୁଇଭଇ ଏବଂ ଅତିଥି ସେଠି ରହିଗଲେ । ଦିନେ ନୁହେଁ କି ଦୁଇଦିନ । ଦୀର୍ଘ ଆଠ ବର୍ଷ ।

ସେବର୍ଷ ଗ୍ରୀଷ୍ମରେ କଳାହାଣ୍ଡିକୁ ଆସିଲା ମହାମାରୀ ଓ ବସନ୍ତ । ଅନେକ ଗାଁ ଶୂନ୍ୟ ହୋଇଗଲା । ବିଧି ଅନୁଯାୟୀ ଗାଁର ଅଧାଖଟ ଉଠିଗଲେ, ଲୋକେ ଗାଁ ଛାଡ଼ି ଅନ୍ୟ ଏକ ଅଞ୍ଚଳକୁ ଚାଲି ଯାଉଥିଲେ । ବ୍ରାହ୍ମଣ ଯୁବକ, ଯିଏକି ଆପଣାର ପରିଚୟ ଦେଇଥିଲେ, ଭୁବନେଶ୍ୱର ମିଶ୍ର ନାମରେ, ଏଇ ହୃଦୟ ବିଦାରକ ଦୃଶ୍ୟ ଦେଖି ଦୁଇ ଭାଇଙ୍କୁ ସଙ୍ଗରେ ନେଇ ବାହାରି ଆସିଲେ । ବସନ୍ତ ଏବଂ ହଇଜା ପାଇଁ ତିଆରି ହେଲା ମହୌଷଧି । ସପ୍ତାହ ମଧ୍ୟରେ ସମଗ୍ର ଅଞ୍ଚଳର ମହାମାରୀ ଆୟତ୍ତକୁ ଆସିଲା ଏବଂ ବ୍ରାହ୍ମଣ ଯୁବକ ଦିନେ ସୂର୍ଯ୍ୟୋଦୟ ବେଳକୁ ଦେଖିଲେ, ଶହ ଶହ କନ୍ଧ ଆଦିବାସୀ, କୃତଜ୍ଞତାରେ ସାଷ୍ଟାଙ୍ଗ ପ୍ରଣିପାତ ପାଇଁ ସମ୍ମିଳିତ । ଭୁବନେଶ୍ୱର ମିଶ୍ର କିନ୍ତୁ ଏଭଳି ଜନସମାବେଶରେ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଲେ । ସେକ୍ଷଣିହିଁ ଦୁଇ ଭାଇଙ୍କୁ ଡ଼ାକି, ଜଙ୍ଗଲ ଦିଗକୁ ମୁହାଁଇଲେ ।

ନିର୍ଜନ ଜଙ୍ଗଲରେ ପହଞ୍ଚି ଦୁଇଭାଇଙ୍କୁ କହିଲେ "ପ୍ରିୟ ବନ୍ଧୁ, ମୁଁ ପ୍ରକୃତରେ ଭୁବନେଶ୍ୱର ମିଶ୍ର ନୁହେଁ । ମୋର ଅସଲ ନାମ ନାରାୟଣ ଦାଶ, ଘର ରଣପୁର । ଗତ ପୌଷପୂର୍ଣ୍ଣମୀ ଦିନ ବେଜେଲ୍ ଗେଟ୍ ନାମକ ଜଣେ ଦୁର୍ଦ୍ଦାନ୍ତ ଗୋରା ସାହେବ, ଦେଶୀ ଲୋକଙ୍କୁ ଗୁଳିରେ ଆଘାତ କରି ରଣପୁର ଯାଉଥିବା ବେଳେ ଲୋଧାଚୁଆ ଗାଁରେ, ଆମେ କେଇଜଣ ମିଶି ତାକୁ ଠେଙ୍ଗାରେ ପିଟି ପିଟି ମୁଣ୍ଡକୁ ଦିଫାଳ କରିଦେଲୁଁ । ତାପରେ ସେଇଠି କ'ଣ ହେଉଛି ମୁଁ ଜାଣି ନାହିଁ, ଗାଁକୁ ଯାଇ ମୋ ସ୍ତ୍ରୀର ସିନ୍ଦୂର ପୋଛି ଦେଇ, ପ୍ରାଣରକ୍ଷା ପାଇଁ ଏଠିକି ଚାଲି ଆସିଛି । ମୋ ପଛରେ ଗୋରା ପଲ୍‌ଟନ୍ ଲାଗିଛନ୍ତି । ଏମିତି ଲୋକ ଗହଳି ଖବର ସହରକୁ ଯିବ । ଗୋରା ପଲ୍‌ଟନ୍ ଆସିବେ ସେଥିପାଇଁ ମୁଁ ପ୍ରସ୍ତୁତ କିନ୍ତୁ ମୋ ପାଇଁ ତୁମର ପରିବାର ଫାଶୀ ପାଇବେ ଏହା ହିଁ ଦୁଃଖ । ମୁଁ ବର୍ତ୍ତମାନ ଯାଉଛି, ମୁଁ ଜାଣେନା କେଉଁଠିକି ବଣରେ ବାଘ ଖାଇଯାଉ, ଗୋରା ପଲ୍‌ଟନ୍ ହାତରେ ମରିବି ନାହିଁ ।"

ସ୍ତବ୍ଧ ହୋଇ ଶୁଣୁଥିଲେ ଦୁଇଭାଇ । ବ୍ରାହ୍ମଣକୁ କହିଲେ "ଗୋସେଇଁ, ଆମେ କ୍ଷତ୍ରୀୟ, ଅତିଥିଙ୍କୁ ବାଘ ମୁହଁକୁ ଠେଲିଦେବା ଆମେ ବଞ୍ଚିଥିବା ଯାଏଁ ସମ୍ଭବ ନୁହେଁ । ଗୋରା ପଲ୍‌ଟନ୍‌କୁ ଆମର ଭୟ ନାହିଁ, ନିର୍ବିଘ୍ନରେ ରହନ୍ତୁ, ଆମେ ଆପଣଙ୍କର ପାଇଁ ଅଜ୍ଞାତ ବାସର ବ୍ୟବସ୍ଥା କରିବୁ" ।

ତାହାହିଁ ହେଲା, ନାରାୟଣ ଦାଶ ଅଜ୍ଞାତବାସରେ ରହିଲେ । ଭାରତ ସ୍ୱାଧୀନ ହେବା ପର୍ଯ୍ୟନ୍ତ । ବିଚକ୍ଷଣ ପଣ୍ଡିତ, ବୈଦ୍ୟ, ସଙ୍ଗୀତଜ୍ଞ ଏହି ଅନନ୍ୟ ସଂଗ୍ରାମୀଙ୍କର ଅଜ୍ଞାତବାସର କାହାଣୀ ଗୋଟାଏ ସମ୍ପୂର୍ଣ୍ଣ ଉପନ୍ୟାସ ହେବ । ତେବେ ସେଇ ଅଜ୍ଞାତ ବାସ ସମୟର ଦୁଇଟି ମାର୍ମିକ ଘଟଣା ଉପସ୍ଥାପନ ନକରି ରହିପାରୁ ନାହିଁ ।

୧୯୪୨ ମସିହା । ରଘୁ ଦିବାକରଙ୍କର ଫାଶୀ ହୁକୁମ ହୋଇ ସାରିଥାଏ । ନାରାୟଣ ଦାଶ କଳାହାଣ୍ଡିର ଜଙ୍ଗଲ ମଧ୍ୟରେ ବାହାର ଜଗତରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ବେଜେଲ୍ ଗେଟ୍ ହତ୍ୟା ପରେ ରଣପୁରରେ କ'ଣ ହେଲା ଜାଣିବା ପାଇଁ ଉଦ୍‌ବିଗ୍ନ । ତାଙ୍କର ଅଜ୍ଞାତବାସ କଣ୍ଢାମାଳ ଗ୍ରାମରୁ ଭକେଲା ମାଇଲିଏ ବାଟ । ସେଠି ସ୍କୁଲ ଅଛି । ହେଡ୍ ପଣ୍ଡିତ, ଭକ୍ତ ଚରଣ ଦାସ ଦୈନିକ ସମ୍ବାଦ ପତ୍ର 'ସମାଜ' ଆଣନ୍ତି । ଗୁରୁବାର ଦିନ ସେଇଠି ବଡ଼ ହାଟ ବସେ ।

ନାରାୟଣ ଦାଶ ହାଟକୁ ଗଲେ । ସ୍କୁଲ୍ ବାରଣ୍ଡାରେ ପଣ୍ଡିତେ 'ସମାଜ' ଧରି ଚଉକିରେ ବସି ପଢୁଥାଆନ୍ତି । ନାରାୟଣ ଖୁବ୍ ଧିରେ ଧିରେ ଯାଇ ପଛରେ ଛିଡ଼ା ହୋଇ ଖବର କାଗଜ ପଢିବାକୁ ଲାଗିଲେ । ଭକ୍ତ ଦାସ- ପଣ୍ଡିତେ ଦେଖିଲେ କିଏ ଜଣେ ତାଙ୍କ ଧରିଥିବା ଖବର କାଗଜରୁ ଖବର ମାନ ପଢୁଛି । ଅତ୍ୟନ୍ତ ଧୂର୍ତ୍ତ ଭକ୍ତ ଦାସ, ନାରାୟଣ ଦାଶଙ୍କର ବିଷୟରେ ଭିତରେ ଭିତରେ ଖବର ରଖିଥାନ୍ତି । ତାଙ୍କର ଗଗ, ଲୋକଟି ଆସିଲା ପରେ ତାଙ୍କର ବୈଦ୍ୟ ଚିକିତ୍ସାର ଆୟ କମି ଯାଇଛି ।

ନାରାୟଣଙ୍କୁ ଜେରା କରିବା ଆରମ୍ଭ କରି ସଙ୍ଗେ ସଙ୍ଗେ ପୋଲିସ୍ ଡାକିଲେ । ନାରାୟଣ ଦାଶ ବନ୍ଦୀ ହେଲେ ।

ସେ ସମୟରେ ପୋଲିସ୍‌ବାଲା ଘୋଡାରେ ଯା ଆସ କରୁଥିଲେ । କଳାହାଣ୍ଡିର ପୋଲିସ୍ ଅଫିସର ଥାଆନ୍ତି ଜଣେ ମୁସଲ୍‌ମାନ୍ । ନାଆଁ ତାଙ୍କର "ଅଦଲ୍" । ତାଙ୍କର ପରାକ୍ରମ ଯୋଗୁଁ କଳାହାଣ୍ଡିରେ ଏବେବି କଥା ଅଛି "ଉପରେ ବାଦଲ୍ ତଳେ ଅଦଲ୍" । ଅଦଲ୍ ସାହେବ୍ ଆସାମୀଙ୍କୁ ନେବାକୁ ଆସିଲେ ।

ସାତଟି ଘୋଡ଼ାରେ ସବାର୍ ସିପାହୀ ବନ୍ଧୁକ ଧରି ଚାଲିଥାଆନ୍ତି । ମଝିରେ ଗୋଟାଏ ଘୋଡ଼ାରେ ବନ୍ଦୀ ନାରାୟଣ ଦାଶ ଏବଂ ଗୋଟାଏ ସିପାହୀ । ଆଗରେ ଅଦଲ୍ । ଭବାନୀ ପାଟଣା ପାଖରେ ଭାଲୁପାହାଡ ଜଙ୍ଗଲ ଘାଟି ପଡ଼ିଲା । ସନ୍ଧ୍ୟା ଆସିଲା । ରଡ ରଡ ସୂର୍ଯ୍ୟ ଦେଖି ନୈଷ୍ଠିକ ମୁସଲ୍‌ମାନ୍ ଅଦଲ୍ ଶୁକ୍ରବାରର ସୂର୍ଯ୍ୟଙ୍କୁ ପ୍ରଣାମ କରି ଚଦର ପକାଇ ନମାଜ୍ ଆରମ୍ଭ କଲେ ନିରବରେ । ପାଖରେ କୋରାନ୍ ସଦାବେଳେ, କୋରାନରୁ ଟିକିଏ ପାଠ କଲେ । ସେଇ ଅଂଶଟିରେ ମହମ୍ମଦଙ୍କର ମଦିନା ଯାତ୍ରା ବର୍ଣ୍ଣିତ । ମହାପୁରୁଷ କିଭଳି ଏକ ଗୁମ୍ଫାରେ ଆଶ୍ରୟ ନେଇଥିଲେ ଏବଂ ତାଙ୍କ ଅନୁସନ୍ଧାନରେ ଥିବା ହତ୍ୟାକାରୀ ମାନେ, ସେଇ ଗୁମ୍ଫାକୁ ଦେଖିବା ବେଳେ, ଘଞ୍ଚ ବୁଢିଆଣୀ ଜାଲ ଦେଖି, କିଏ ନାହାନ୍ତି ଭାବି କିଭଳି ଫେରିଗଲେ ତାହା ପଢିଲେ ।

ମହାପୁରୁଷଙ୍କର ନିର୍ବିଘ୍ନ ଯାତ୍ରାରେ ଆନନ୍ଦିତ ଅଦଲ୍ ନମାଜ୍ ସାରି ସିପାହୀ ମାନଙ୍କୁ ଖୋଜିଲେ । ଦୂରରେ ଘଞ୍ଚ ଶ ଜବଣ, ଶାଢ ଗଛର ମୂଳକୁ ମୂଢ ବହଳ ବୁଢ଼ୀଆଣୀ ଜାଲ. ଅସ୍ତାୟିତ ସୂର୍ଯ୍ୟ ଢାଲ ଭିତରେ ସିପାହୀ ଓ ବନ୍ଦୀ ନାରାୟଣ ଦାଶ ଦୃଶ୍ୟମାନ ।

ଅଦଲ୍ ସାହେବ ଚମକି ପଡ଼ିଲେ । ଯେଉଁ ବୁଢିଆଣୀ ଦିନେ ମହାପୁରୁଷଙ୍କୁ ରକ୍ଷା କରିଥିଲା, ସେଇ ବୁଢିଆଣୀ ଆଜି ଆସାମୀକୁ ଘୋଡାଇ ପାରୁନାହିଁ । ଭାବାନ୍ତରରେ ନିମଗ୍ନ ଅଦଲ୍ ହଠାତ୍ ଆଦେଶ ଦେଲେ "ଛୋଡ୍ ଦୋ, ଇଏ ଦେକସୁର୍ ହେ" ।

ମୁକ୍ତ ନାରାୟଣଙ୍କୁ ଡାକି କହିଲେ "ବ୍ରାହ୍ମଣ ! ତୁ ପଳାଇ ଯାଆ-ମୁଁ ରଜାଙ୍କୁ କହିବି, ବଦ୍ମାସ ପଳାଇ ଗଲା, ସିପାହୀ ଯାଇଛନ୍ତି ପଛରେ" ।

ନାରାୟଣ ପୁଣି ଅଜ୍ଞାତ ବାସରେ ରହିଲେ । ୧୯୪୭ ମସିହା ସେପ୍ଟେମ୍ବର ୨୯ ତାରିଖ ଭଦ୍ରବ ପୂର୍ଣ୍ଣିମା । ବିଦ୍ୟାଧର ଘରେ ନାରାୟଣ ଦାଶ ନୃସିଂହ ପୁରାଣ ପାଠ କରୁଥାନ୍ତି ! ରତି ନଅଟାରେ ବିଦ୍ୟାଧରଙ୍କ ସ୍ତ୍ରୀ ଜନ୍ମ ଦେଲେ ଗୋଟାଏ ପୁତ୍ର ସନ୍ତାନ । ପୁରାଣ ପାଠ ମାତ୍ର ହେଲା, ତେଣୁ ଯଥା ବିଧି ଉଦ୍ଯାପନ ସାରି ନାରାୟଣ ବିଦ୍ୟାଧରଙ୍କୁ ଡ଼ିବିରୀ ଆଲୁଅ ପାଖକୁ ଡ଼ାକି କହିଲେ "ଧଳା କାଗଜ ଆଉ କଲମ ଆଣ, ନବଜାତକର କୋଷ୍ଠୀ ପାଇଁ ଟିପ୍ପଣୀ ନେବା" ।

ବିଦ୍ୟାଧର ମାସେ ତଳର ଗୁରୁବାର ହାଟରୁ ଅଣା ଯାଇଥିବା ପୁରୁଣା 'ସମାଜ' ଉପରେ ଧଳା କାଗଜ ଆଉ କଲମ ଲେଖିବା ପାଇଁ ନାରାୟଣଙ୍କୁ ବଢାଇ ଦେଲେ । ମିଞ୍ଜି ମିଞ୍ଜି ଡ଼ିବିରୀ ଆଲୁଅରେ ପିଣ୍ଡାରେ ବସି, ନାରାୟଣ 'ସମାଜ'ଟିକୁ ଟାଣି ଆଣି ପଢ଼ିଲେ ଏବଂ ଏକ ବିରଟ ଚିତ୍କାର କଲେ " ଆରେ ବାୟା ! ଆରେ କନ୍ଦର୍ପ ! ଆସରେ ମୋର ଦୁଃଖ ସରିଗଲାରେ, ଅଗଷ୍ଟ ପନ୍ଦର ତାରିଖରେ ଭାରତ ସ୍ୱାଧୀନ ହୋଇଛି, ଜବାହାର ପ୍ରଧାନ ମନ୍ତ୍ରୀ । ମୁଁ ଏବେ ସ୍ୱାଧୀନ,-ମୁଁ ଆଉ ଫାଶୀ ପାଇବି ନାହିଁରେ ବାୟା !

ପୁଣି ଗୁରୁ ଗମ୍ଭୀର ହୋଇ କହିଲେ ଏଇ ନବଜାତକହିଁ ଏଇ ଉତ୍ତମ ସମ୍ବାଦ ମୋତେ ଦେଇଛି, ମୁଁ ତା'ର ନାମ କରଣ କରୁଛି, "ଉତ୍ତମ କୁମାର"

ଏଇ ଅଧମ କଥାକାରର ଉତ୍ତମ ନାମ କରଣ କରିଥିବା ନାରାୟଣ ଦାଶ ପରେ ପରେ ସ୍ଵାଧୀନତା ସଂଗ୍ରାମୀ ଭାବରେ ସରକାରଙ୍କ ଦ୍ଵାରା ସମ୍ବର୍ଦ୍ଧିତ ହୋଇ, ସେ ଯାଏଁ ବିଧବା ଭାବରେ ଜୀବନ ଯାପନ କରୁଥିବା, ପତ୍ନୀଙ୍କୁ ପୁନର୍ବାର ସିନ୍ଦୁର ମଖାଇ ଥିଲେ ।

ତାଙ୍କର ଅଜ୍ଞାତ ବାସରେ ପ୍ରତିଷ୍ଠିତ ଘରେଇ ଚଟଶାଳୀରେ ହିଁ,ମୋର ପ୍ରାଥମିକ ଶିକ୍ଷା । ୧୯୬୮ ମସିହାରେ ନାରାୟଣ ଦାଶଙ୍କର ଦେହାନ୍ତ ହୋଇଗଲା । କିନ୍ତୁ ନିସ୍ଵାର୍ଥପର ଏହି ମହା ସଂଗ୍ରାମୀଙ୍କ ଯୋଗୁଁ ହିଁ ନିକ୍ଷେର ମୂଳକରେ ଶିକ୍ଷାର ସୂର୍ଯ୍ୟୋଦୟ ସମ୍ଭବ ହୋଇଥିଲା ।

୧୯୬୦ ମସିହା, ଭବାନୀ ପାଟଣା କଳାହାଣ୍ଡି । ମୁଁ ସେତେବେଳେ ଅଷ୍ଟମ ଶ୍ରେଣୀର ଛାତ୍ର । ବ୍ରଜମୋହନ ହାଇସ୍କୁଲ୍‌ର ସାହିତ୍ୟ ଶିକ୍ଷକ ଶ୍ରୀଯୁକ୍ତ ଭବାନୀ ଶଙ୍କର ପଣ୍ଡା ଆମଭଳି କିଶୋର କବିଙ୍କର ପ୍ରେରଣାର ପ୍ରାଣ । ଖୁବ୍ ଭଲ ପାଉଥିଲେ ମୋତେ । ମୋର କବିତା ସବୁ ପଢ଼ିଲେ ଏବଂ କହିଲେ ବୈଦେହୀଶ ବିଳାସର ବିଲୋମ ଅନୁଲୋମ ଯମକ ଶୈଳୀରେ ଜଗନ୍ନାଥଙ୍କ ଜଣାଣଟିଏ ଲେଖିବୁ । ବିଲୋମ ଅନୁଲୋମ ଯମକ ହେଲା, ପଦକୁ ଓଲଟାଇ ପଢ଼ିଲେ ମଧ୍ୟ ତାହା ହେବ । ମୁଁ ତହିଁ ଆରଦିନ ସେଙ୍କୁ 'ଅନନ୍ତାମ୍ବନ' ନାମକ ନିମ୍ନ ଲିଖିତ କବିତାଟି ଦେଲି ।

ଅନାଅ ସରସନନ ସରସ ଅନାଅ
ଅନାଅ ନୟନ ମମ ନୟନ ଅନାଅ
ଅପାର ପଦପ ନାନା ପଦପର ପାଅ
ଅପାଦ ପାବନ ନନ ନବ ପାଦ ପାଅ (୨)
ଅଙ୍ଗାରରେ ଙ୍ଗର ନାନା ରଙ୍ଗରେ ରଙ୍ଗାଅ
ଅନାମରେ ତିନି କିକି ନୀତିରେ ମନାଅ (୩)
ଅନ୍ଧାରରେ କ୍ଷୀର କିକି ରକ୍ଷୀରେ ରନ୍ଧାଅ
ଅଗ୍ନନକୁ ଯା'ର ଶେଷେ ରଜାକୁ ନଗ୍ରଅ (୪)
ଅଦିନରେ ଦିନ ଶେଷେ ନଦୀରେ ନ ଦିଅ
ଅନାବନା ବନ ଶେଷେ ନବନାବ ନାଅ (୫)

ଅସାରରେ ଶାନ୍ତି ନାନା ନିଶାରେ ରସାଅ
ଅନାଥଙ୍କୁ ଥର ରଥକୁ ରଥ ନାଅ (୬)
'ଅ'କାରତା ବିକଶେ ସେ କବିତାର କାୟ
ଅନାଅ ମତ୍ତଭ ନମ ଭତ୍ତମ ଅନାଅ (୭)

କବିତାଟି ପଢି ସେ ମୁଗ୍ଧ ହେଲେ କିନ୍ତୁ ଅତି ଦୁଃଖରେ କହିଲେ ତୁ ଜୀବନରେ ସଫଳ ହୋଇ ପାରିବୁ ନାହିଁ । ତୋର ହସ୍ତାକ୍ଷର ଏତେ କଦର୍ଯ୍ୟ ଯେ, ତୋର ଜୀବନରେ କୌଣସି ସଫଳତା ଅସମ୍ଭବ ।

ପ୍ରକୃତରେ ମୋର କଦାକାର ହସ୍ତାକ୍ଷର ପାଇଁ ମୁଁ ସଦାବେଳେ ଚିନ୍ତିତ ଥାଏ । ମୋର ପ୍ରିୟ ଗୁରୁଙ୍କ ମୁଖରୁ ଏହା ଶୁଣିଲା ପରେ, ରାତିଦିନ କେବଳ ହସ୍ତାକ୍ଷର ଲେଖିଲି । ସକାଳରୁ ସଂଧ୍ୟା ଯାଏଁ,- କେବଳ ଲେଖିଲି-କିନ୍ତୁ କୁକୁର ଲାଙ୍ଗୁଡ଼ ଭଳି, ହସ୍ତାକ୍ଷରରେ କୌଣସି ଉନ୍ନତି ହେଲା ନାହିଁ । ଶେଷରେ ନିଷ୍ପତି କଲି, ଆତ୍ମହତ୍ୟା କରିଦେବି ।

ଆତ୍ମହତ୍ୟା କିନ୍ତୁ ଥିଲା ବଡ କଠିନ । ଏବ ଭଳି ଫ୍ଲାଇଓଭର, ସୁଲଭ ନଥିଲା, ନଈ ନାଳରେ ମୋ ଭଳି ଓସ୍ତାଦ୍ ପହଁରିବାଲା ବୁଡ଼ି ମରିବା ଅସମ୍ଭବ । ଦଉଡ଼ି ଦେଇ ମରିବା ମୋତେ କାହିଁକି ନିହାତି ଅନାକର୍ଷଣୀୟ ମନେହେଲା । ଅନେକ ଚିନ୍ତା କରି ଶେଷରେ ଉପାୟଟି ମନକୁ ଆସିଲା ।

ଆମ ସ୍କୁଲର ବିଜ୍ଞାନାଗାରରେ ଗୋଟାଏ ମଣିଷ କଙ୍କାଳ ଥାଏ । ପିଲାମାନେ କହୁଥିଲେ ଯେ ରାତିରେ କଙ୍କାଳ ପାଖକୁ ଯାଇହେବ ନାହିଁ, କାରଣ ଭୂତ ହୋଇ କଙ୍କାଳଟି ଖାଇଯିବ । ମନେ ମନେ ସ୍ଥିର କଲି ରାତିରେ ସେଇ କଙ୍କାଳ ପାଖକୁ ଗଲେ, ମୋର ସମସ୍ୟା ତୁଟିବ ।

ସେଇ ରାତିରେ ଛାତ୍ରାବାସରୁ ଚୁପ୍ ଚୁପ୍ ବାହାରି ଯାଇ ଭଙ୍ଗା ଝରକା ଖୋଲି କଙ୍କାଳ ପାଖରେ ପହଞ୍ଚି ସମର୍ପଣ ମୁଦ୍ରାରେ ମୁଣ୍ଡପାତି କାନ୍ଦି କାନ୍ଦି କହିଲି " ମୋତେ ଖାଆ " ।

ଆଶ୍ଚର୍ଯ୍ୟ କଙ୍କାଳ ମୋତେ ଖାଇଲା ନାହିଁ । ରାତିଟା ସାରା ଛଟ୍ ପଟ୍ ହେଲି, ସକାଳ ହେବା ଆଗରୁ ବିରକ୍ତରେ କଙ୍କାଳକୁ ଗୋଟାଏ ଗୁଣ୍ଡା ମାରି, ନିରାଶରେ ଫେରିଲି ଛାତ୍ରାବାସ ।

ଆରଦିନ ପୁଣି ଚିନ୍ତା କଲି ମରିବାର ଶେଷ ଉପାୟ । ଏଥର ଆଉ ଏକ ବୁଦ୍ଧି ଜୁଟିଲା । ଭବାନୀପାଟଣା ସହରକୁ ଲଗି ଆଶା ସାଗର ଜଳଭଣ୍ଡାର-ତଳକୁ ବୁଦ୍ ବୁଦ୍କା ଜଙ୍ଗଲ ଏବଂ ଦୁଇଟି ନଣ୍ଡା ପାହାଡ ମଝିରେ ରାଜପରିବାରର ମଶାଣି । ସ୍ଥାନଟି ହେଟାବାଘ, ବିଲୁଆଙ୍କର ଘର । ଜଣେ ମହାରାଜାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଗୋଟାଏ ମାର୍ବଲ ମନ୍ଦିର ରାଜସ୍ଥାନୀ ଶୈଳୀରେ ନିର୍ମିତ । ଚାରିଟି ମାର୍ବଲ ଖମ୍ବ ଉପରେ ମାର୍ବଲର ମଣ୍ଡପଟିଏ । ପାଖକୁ ଲଗି ଜଳଭଣ୍ଡାରର ଉଦ୍‌ବୃତ୍ତ ଜଳ ବହି ଯାଉଥାଏ ତଳକୁ । ସେଠିକି ଦିନବେଳା ମଧ୍ୟ କେହି ପଲ୍ଲ ସାହସ କରି ଯାଆନ୍ତି ନାହିଁ ଭୂତ ଭୟରେ । ମୁଁ ଭାବିଲି ଅସଂଖ୍ୟ ଭୂତ ପ୍ରେତର ହାଟ, ସେଇଠିକି ରାତିରେ ଗଲେ, ଭୂତ ପ୍ରେତ ମାଡ଼ି ବସିବେ ।

ସେଇଦିନ ଅମାବାସ୍ୟା, ଦିନ ଚାରିଟାରୁ ପେଟେ ଖାଇ ମଶାଣି ଚାଲିଲି । ସେଇ ମାର୍ବଲ ମଣ୍ଡପ ଉପରକୁ ଚଢିଗଲି । ଫାଲ୍‌ଗୁନ ମାସର ବଉଳ ବାସ୍ନା ସାଗରର ବନ୍ଧ ଆଡୁ ମହକି ଆସୁଥାଏ ଶୀତଳ ପବନ ସହ । ମୁଁ ଭୂତ ପ୍ରେତଙ୍କୁ ସ୍ମରଣ କରି ମଣ୍ଡପ ଉପରେ ଶୋଇ ପଡ଼ିଲି ।

ଧଡ୍‌କିନା ମୋର ନିଦ ଭାଙ୍ଗିଗଲା । ଚାରିଆଡ଼େ ଅନ୍ଧାର । ରାତି ଗୋଟାଏ ପାଖାପାଖି ହେବ । ମୁଁ ସଚେତ ହୋଇ ଭୂତ ଠଉରେଇଲି । ଶାଗୁଣା, ବିଲୁଆ, ହେଟାଙ୍କର ସମ୍ମିଳିତ ବିକଟାଳ ଆବାଜମାନ ଆସୁଥାଏ ତଳରୁ । ସମ୍ପୂର୍ଣ୍ଣ ଅନ୍ଧକାର ମଧ୍ୟରେ କିଛି ଦେଖାଯାଉ ନ ଥାଏ । ଦୂରରେ ଦେଖିଲି ଗୋଟାଏ ଜାଗାରେ ନିଆଁ ଜଳୁଛି, ପୁଣି ନିଭି ଯାଉଛି । ସେଇ ନିଆଁର ଚାରିପାଖରେ ଚାରି ପାଞ୍ଚଟି କଳା କଳା ଛାଇ ଘୁରି ବୁଲୁଛନ୍ତି । ଆଉ ଟିକିଏ ନିଘେଇ ଚାହିଁଲି । ଗୋଟାଏ ମୁର୍ଦ୍ଦାର ଚିତାରେ ଜଳୁଛି, ଆଉ ସେଇ କଳା କଳା ଛାଇମାନେ ତାକୁ ଓଲଟ ପାଲଟ କରୁଛନ୍ତି । ମୁଁ ଏଥର ନିଶ୍ଚିତ ହେଲି ଯେ ସେମାନେ ପ୍ରେତ ଏବଂ ଶବ ଓଟାରି ଖାଉଛନ୍ତି । ପ୍ରେତମାନଙ୍କ ପ୍ରତି ଭୟ ତ ନଥିଲା, ଘୃଣା ଲାଗିଲା । ତଥାପି ଭାବିଲି ସେମାନେ ତ ମୋତେ ଖାଇବେ, ତାଙ୍କୁ ଡାକି ଦେବା ଭଲ ହେବ । ସେମାନଙ୍କ ଦୃଷ୍ଟି ଆକର୍ଷଣ ପାଇଁ ମୁଁ ଖଣ୍ଡି କାଶଟିଏ ମାରି ମଣ୍ଡପ ଉପରେ ଛିଡ଼ା ହେଲି ।

ମୋର ଖଣ୍ଡି କାଶରେ ସମସ୍ତ ଶ୍ମଶାନ ସ୍ତବ୍ଧ ହୋଇଗଲା । ଚିତାଗ୍ନିର ପାଖରେ ଝୁଲ୍‌ବୁଲ୍ ହେଉଥିବା କଳା କଳା ଭୂତମାନେ ମଧ୍ୟ କ୍ଷଣିକ ସ୍ଥିର

ଛିଡ଼ାଇ ମୋ ଆଡକୁ ଅନାଇଲେ । ତାପରେ ମଣ୍ଡପ ଉପରେ ମୋତେ ଦେଖିଲାକ୍ଷଣି 'ବାପାଲେ, ଭୂତ ! ଭୂତ ! କହି ପ୍ରାଣ ବିକଳରେ ସହର ଆଡ଼କୁ ଦଉଡ଼ିବାକୁ ଲାଗିଲେ । ମୋତେ ଖାଇବା ପାଇଁ ଆମନ୍ତ୍ରଣ କରୁଥିବା ବେଳେ ଭୂତ ମାନଙ୍କର ଏଭଳି ପଳାୟନ ମୋତେ ବିସ୍ମିତ କରିଦେଲା । ତଥାପି ନିରାଶ ନ ହୋଇ ମଞ୍ଚରୁ ତଳକୁ ଓହ୍ଲାଇ ତାଙ୍କ ପଛରେ ଦଉଡ଼ି ଯାଇ ଡ଼ାକିଲି, 'ସେଆଡ଼େ କୁଆଡେ ଯାଉଛ ମୁଁ ଏଇଠି' । ଆଶ୍ଚର୍ଯ୍ୟ ମୋର ଓହ୍ଲାଇବା ଏବଂ ତାଙ୍କୁ ଅନୁସରଣ କରିବା ଦେଖି ପଛକୁ ଭରସି ଅନାଉଥିବା କେଇଜଣ ଏମତି ବେଗରେ ସହରମୁଖୀ ଦଉଡ଼ିବା ଆରମ୍ଭ କଲେ ଯେ ସେମାନେ ଖାଲି ଢ଼ିପ ବଣବୁଦା ଉପରେ ଉଡ଼ିବା ଭଳି ମନେ ହେଲା ।

ମୁଁ ମଧ୍ୟ ତାଙ୍କୁ ଅନୁସରଣ କରି ଛାତ୍ରାବାସ ଫେରି ଆସିଲି । ଆତ୍ମହତ୍ୟା ହୋଇନଥିଲା । ସକାଳ ହେଲା ଭବାନୀ ପାଟଣା ପରଦେଶୀ ପଡାରୁ ପାଞ୍ଚଜଣ ଲୋକ ଶବ ସତ୍କାର ପାଇଁ ମଶାଣୀ ଯାଉଥିବା ବେଳେ ଏକ ଦୁର୍ଦ୍ଦାନ୍ତ ଠେଙ୍ଗୁଆ ଭୂତ ଗୋଡାଇବା ଯୋଗୁଁ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ଖବର ଛାତ୍ରାବାସ ପାଖରେ ଖେଳିଯାଇ ଥାଏ । ମୁଁ ସାଙ୍ଗମାନଙ୍କ ସହ ଅଭଗା ମାନଙ୍କୁ ଦେଖିବାକୁ ତାଙ୍କ ଯାଇଥିଲି । ତାଙ୍କ ମଧ୍ୟରୁ ବେଶ୍ ବଳବାନ୍ ହୃଷ୍ଟପୁଷ୍ଟ ଯୁବକ ଯିଏକି ମଞ୍ଚ ଉପରୁ ଖଣ୍ଡିକାଶ ଶୁଣିଲାପରେ ଭୀତତ୍ରସ୍ତ ସାଥୀ ମାନଙ୍କୁ ଭୂତ ପ୍ରେତ କିଛି ନାହିଁ' କହି ସାହାସ ଦେଇ କିଛିକ୍ଷଣ ପଛରେ ଅଟକି ଯାଇଥିଲା, ତାହାର ଗୋଡ଼ ହାତ ଭାଙ୍ଗିଛି, ଦୁଇ ଦୁଇଟି କ୍ୟାମ୍ପୋଜ୍ ଇଂଜେକସନ୍ ସତ୍ତ୍ୱେ ତା'ର ଭୂତ ଭୂତ ପ୍ରଳାପ ବନ୍ଦ ହେଉନି, ଡାକ୍ତରମାନେ ପରୀକ୍ଷା କରି କହୁଛନ୍ତି-ଉଭୟରେ କଲିଜା ତା'ର ଦୁଇ ତିନି ଜାଗାରେ କଣା ହୋଇ ଯାଇଛି । ବିଚରାର ବିକଳ ଅବସ୍ଥା ଦେଖି ମୁଁ ଅସମ୍ଭାଳି ହସକୁ ଚାବୁଡ଼ି ନ ପାରିବା ଦେଖି ମୋର ସହପାଠୀ ଜଣେ ବିଜ୍ଞାନ ଛାତ୍ର କହିଲା ''ଆରେ ହସୁଛୁ କ'ଣ ? ଭୂତ କ'ଣ ଗୋଡ଼ ହାତର ମାଉଁସ ଖାଏ, ଛାତି ଭିତରର କଲିଜା ହିଁ ବଦ୍ ମାସର ବଡ଼ପ୍ରିୟ ।

୧୯୬୬ ମସିହା ଦଶହରା । ମୁଁ ରେଭେନ୍ସା କଲେଜରେ ଛାତ୍ର । ଛୁଟି ସରିବା ପରେ କେସିଙ୍ଗାଠାରେ ଟ୍ରେନ୍ ଧରିବା ପାଇଁ ଉକ୍ଳେଜା ରାସ୍ତାରେ ବସ୍‌କୁ ଅପେକ୍ଷା କରିଥାଏ । କେସିଙ୍ଗା ଆଡୁ ଗୋଟାଏ ଜିପ୍ ଆସି ରାସ୍ତା କଡ଼ରେ ଅଟକିଲା । ସେ ମଧ୍ୟରୁ ଜଣେ ସୁଟ୍ ପରିହିତ ସୁଦର୍ଶନ ମଧ୍ୟ ବୟସ୍କ ବ୍ୟକ୍ତି

ଜିପ୍‌ରୁ ଓହ୍ଲାଇ ମୋତେ ପଗ୍ଚରିଲେ "ଶୁଣିଲ ବାବୁ ! ଏଇ କ'ଣ କଳାହାଣ୍ଡି ? ଆମେ ଭବାନୀପାଟଣା ଯିବାକଥା, ଭୁଲ୍ ରାସ୍ତାରେ ଯାଉନୁତ ? ଶୁଣିଥିଲି, କଳାହାଣ୍ଡିରେ ଘୋର ଜଙ୍ଗଲ, ବାଘ, ଭାଲୁ କାହିଁ କିଛିତ ଦେଖା ଯାଉନି ?"

ମୁଁ ଉତ୍ତର ଦେଲି "ଆଜ୍ଞା ଇଏ କଳାହାଣ୍ଡି । ଆପଣ ଠିକ୍ ରାସ୍ତାରେ କଳାହାଣ୍ଡି ଯାଉଛନ୍ତି । ଆଉ ଜଙ୍ଗଲ ଭାଲୁ, ବାଘ ହରିଣ, ସେ ସବୁ କଟକିଆ ମାନଙ୍କୁ ଡରି ଭବାନୀପାଟଣା ଆରପଟକୁ ପଳେଇଲେଣି, ଭବାନୀପାଟଣା ଡେଇଁଲେ ଭେଟହେବ ।"

ମୋର ଉତ୍ତର ଶୁଣି ଭଦ୍ରବ୍ୟକ୍ତି ମୋତେ ତାଙ୍କରୁ ତଳିପା ଯାଏଁ ଭଲ-ଭାବରେ ଅନାଇ ଗାଡ଼ିରେ ବସିଲେ ।

ଅନେକ ଦିନପରେ, ଅର୍ଥାତ୍ ମୋର ବିବାହର ଦୁଇବର୍ଷ ପରେ, ୧୯୭୫ ମସିହାରେ ମୋର ଶ୍ୱଶୁର ଶ୍ରୀଯୁକ୍ତ ରାଜକିଶୋର ରାଉତରାୟ, ମୋତେ ଦିନେ କଳାହାଣ୍ଡି ପ୍ରସଙ୍ଗରେ କହିଲେ "ଉତ୍ତମ ! ତମ କଳାହାଣ୍ଡିକୁ ୧୯୬୬ ମସିହାରେ ଯାଇଥିଲି । ବଲାଙ୍ଗୀର ଆଡରୁ ତେଲନଦୀ ପାର ହେବା ପରେ ବେଶୀ କିଛି ଜଙ୍ଗଲ ନ ଦେଖି ବାଟଘର ପିଲଟିକୁ ପଚାରିଲି, ଏ କ'ଣ ଭବାନୀପାଟଣା କଳାହାଣ୍ଡିକୁ ରାସ୍ତା ? କାହିଁ ବଣ ଜଙ୍ଗଲ, ବାଘ ଭାଲୁ ଦେଖା ଯାଉନାହିଁ, ଆମେ ରାସ୍ତା ଭୁଲି ଯାଇନୁତ ।"

ପିଲଟି ନିହାତି ବଦ୍‌ମାସ୍, କହିଲା "ହଁ, ଠିକ୍ ରାସ୍ତାରେ ଯାଉଛନ୍ତି, ଏଇ କଳାହାଣ୍ଡି । ଆଉ ବଣ ଜଙ୍ଗଲ, ବାଘ ଭାଲୁ, ତମ କଟକିଆଙ୍କୁ ଡରି, ପଳେଇଲେଣି ଆରପଟକୁ ।"

ମୁଁ ଚମକିପଡ଼ି, ତାଙ୍କୁ ଆଗ୍ରହରେ ଭଲକରି ଚାହିଁ କହିଲି ସେଇ ବଦ୍‌ମାସ୍ ବାଳକକୁ ଆପଣ ଏବେ ଦେଖିଲେ ମଧ୍ୟ କ'ଣ ଚିହ୍ନି ପାରିବେ ? ମୁଁ ସେଇ ବଦ୍‌ମାସ୍ ।

ସେ ଖୁବ୍ ହସିଲେ । ଶ୍ରମ ବିଭାଗର ଉପଶାସନ ସଚିବ ଭାବରେ ସେ ମୁଖ୍ୟମନ୍ତ୍ରୀ ସିଂହଦେଓଙ୍କ ଆଦେଶରେ, ପାହାଡ଼ ଧସି ପୋତି ହୋଇ ଯାଇଥିବା ଲକ୍ଷ୍ମୀପୁର ଗ୍ରାମର ପୁନରୁଦ୍ଧାର ପାଇଁ ୧୯୬୬ରେ କଳାହାଣ୍ଡି ଯାଇଥିଲେ । ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଯେଉଁ ଗ୍ରାମବାସୀ ମାନେ ପର୍ବତ ଗର୍ଭରୁ ବର୍ତ୍ତି ଯାଇଥିଲେ

ତାଙ୍କ ପାଇଁ ନୂଆ ଗ୍ରାମଟେ ତିଆରିହେଲା । ପ୍ରାସଙ୍ଗିକ ହେଲ, ସେହି ଗିରି ଗୋବର୍ଦ୍ଧନ ନାମକ ପାହାଡ଼ ତଳର ଲକ୍ଷ୍ମୀପୁରରେ ମୋର ଜଣେ ପିଉସୀ ଘରେ ରହି ଭବାନୀପାଟଣା ଯା ଆସ କରି ମୁଁ ସପ୍ତମ ଯାଏଁ ପଢ଼ିଛି । ସ୍କୁଲ୍‌ଯିବା ବାହାନାରେ ସେଇ ପାହାଡ଼ ଉପରେ ଯାଇ ଦିନ ନଅଟାରୁ ଅପରାହ୍ଣ ଚାରିଟା ଯାଏଁ ଲୁଚି ଯାଉଥିଲି, କେବଳ ଗଣିତ ମାଷ୍ଟରଙ୍କର ବେତ ମାଡ଼ର ଭୟରେ । କଟକ ରେଭେନ୍‌ସାରେ ଖବର କାଗଜରେ ଦିନେ ପଢ଼ିଲି, "ଗିରି ଗୋବର୍ଦ୍ଧନ ପାହାଡ ଘଡିରେ ଖସି, ସମଗ୍ର ଲକ୍ଷ୍ମୀପୁର ଗ୍ରାମଟି ପୋତି ହୋଇ ଯାଇଛି । ଅଧିକାଂଶ ଗ୍ରାମବାସୀ ଶୈଳ ସମାଧି ଲାଭ କରିଛନ୍ତି "

ଶ୍ରୀଯୁକ୍ତ ଗଜକିଶୋର ଗଡତରାୟ, ମୁଁ ଓ ଏ ଏସ୍‌ରେ ଥିବାବେଳେ ମୋର ଉପରିସ୍ଥ ହାକିମ୍ ଏ.ଡ଼ି.ଏମ୍. ଥିଲେ, ପରେ ମୁଁ ତାଙ୍କଝିଅକୁ ବାହାହେଲି । ମୋର ପ୍ରତ୍ୟେକ ଗଳ୍ପର ସେ ପ୍ରାୟତଃ ଥିଲେ ପ୍ରଥମ ପାଠକ । ପ୍ରତ୍ୟେକ ଗଳ୍ପ ପାଠ କରି କହନ୍ତି " ଉତ୍ତମ ! କଳାହାଣ୍ଡି ବିଷୟରେ ହିଁ ଲେଖ,—ନିରୀହ ଆଦିବାସୀଙ୍କ ପ୍ରାଣ-ପ୍ରାଚୁର୍ଯ୍ୟ ଆମକୁ ଅଜଣା ।"

ନଚିକେତାର ହାତ ପାଇଁ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରଦାନ ଉତ୍ସବରେ ସେ ଉପସ୍ଥିତ ଥିଲେ । ମୁଖ୍ୟମନ୍ତ୍ରୀଙ୍କ ହାତରୁ ତାମ୍ରଫଳକ ଆଣି ତାଙ୍କୁ ଦେଲି, ସେ ବିହ୍ୱଳିତ ଆବେଗରେ କହିଲେ " ମୋର କଳାହାଣ୍ଡିଆ ଜୋଇଁ ପାଇଁ ମୁଁ ବହୁତ ଗର୍ବିତ, ଉତ୍ତମ, ତମେ କେବଳ କଳାହାଣ୍ଡି ବିଷୟରେ ଲେଖ, ଲେଖାରେ ପଇସା ନାହିଁ, ଲେଖା କେବେ ବନ୍ଦ କରିବ ନାହିଁ ।"

ମାସଟିଏ ମୋ ବସାଘରେ ରହିବାପରେ ଦିନେ ସଂପୂର୍ଣ୍ଣ ଏହି ବହିଟି ପଢି କହିଲେ "ଉତ୍ତମ, ତମ ନଚିକେତାର ହାତ'ର ମୁଖବନ୍ଧଟି ବହିର ସବୁଠୁଁ ସୁନ୍ଦର ହୋଇଥିଲା । ଏଥର ସେମିତି ମୁଖବନ୍ଧଟେ ଲେଖ—"

ଏହାପରେ ପରେ ସେ ଅଚେତ ହୋଇ ଡ଼ାକ୍ତରଖାନା ଗଲେ । ୧୯୯୧ ମସିହା ଡ଼ିସେମ୍ବର ତିନିତାରିଖ । ପ୍ରତିଦିନ ଭଳି ତାଙ୍କୁ ଦେଖିବା ପାଇଁ ଡ଼ାକ୍ତରଖାନା ଗଲି । ଡାକ୍ତରଖାନାରେ ପହଞ୍ଚିବା ବେଳକୁ ମୋ ସ୍ତ୍ରୀ ରଂଜୁଶ୍ରୀ ତାଙ୍କର ନିଶ୍ଚଳ ଶରୀର ଉପରେ ମୁଣ୍ଡପିଟି ଡାକୁଥିଲେ "ବାପା ! ଉଠ ବାପା ! ହେଇ ତମର ଗପକୁହା ଜୋଇଁ ଆସିଲେଣି, ଉଠ ଥରୁଟିଏ ଉଠ, ଗପ ଶୁଣ ବାପା—କଳାହାଣ୍ଡିର ଗପ... ।

ମୋର ପ୍ରିୟତମ ପାଠକ, ମୋର ଜୀବନ୍ତ ପ୍ରେରଣା ନିର୍ବାକ ନିସ୍ପନ୍ଦ, ନିଷ୍ପଳ ଆଖିରେ ମୋତେ ଅନାଇ ରହିଥିଲେ ପରମ ପ୍ରଶାନ୍ତିରେ । ଅସମ୍ଭାଳ, ଆବେଗରେ ଅସହାୟ, ଜ୍ଞାତି କୁଟୁମ୍ବଙ୍କ ବିକଳ କ୍ରନ୍ଦନ ଭିତରେ, ତାଙ୍କର ଶେଷ-କଥାଟି, ବଜ୍ର ନିର୍ଘୋଷ କଣ୍ଠରେ ମୋତେ ଶୁଭୁଥାଏ "ଉତ୍ତମ, କଳାହାଣ୍ଡିର କଥାହିଁ ଲେଖ ଲେଖାବନ୍ଦ କରିବ ନାହିଁ ଏଥର ମୁଖବନ୍ଧଟି........

ପରିଶେଷରେ ଇଷ୍ଟର୍ଣ୍ଣ ମିଡ଼ିଆ ପ୍ରକାଶନ ଆଜି "କଳାହାଣ୍ଡିରେ କଥାକାର" ପ୍ରକାଶ କରୁଛନ୍ତି । ଏଇ ଅବସରରେ-ମୋର ପ୍ରିୟତମ ପାଠକ, ପ୍ରଥମ ପୃଷ୍ଠପୋଷକ ସ୍ୱର୍ଗୀୟ ଗଙ୍ଗକିଶୋର ଗଉତରାୟଙ୍କ ସ୍ମୃତିରେ ହିଁ ଏଇ "କଳାହାଣ୍ଡିରେ କଥାକାର"ଙ୍କୁ ଅର୍ପଣ କରୁଛି ।

ଉତ୍ତମ

# ସୂଚୀ

ରାଜ୍ୟର ମୁଖ୍ୟ ବନପାଳ ଭାବରେ ଅବସର ଗ୍ରହଣ ପରେ, ରାଜଧାନୀରେ, 'ବନାନୀ' ନାମକ ପ୍ରାସାଦରେ ମୁଁ ଏବେ ଅବସ୍ଥାନ କରୁଛି । ମୋର ଚାକିରିକାଳ ମଧ୍ୟରେ ଯେଉଁ ଯେଉଁ ବନାଞ୍ଚଳମାନଙ୍କର ତତ୍ତ୍ୱାବଧାନ (ହତ୍ୟାବଧନ)ରେ ଥିଲି ତହିଁର ବିଲୁପ୍ତ ପାଦପବଂଶଙ୍କର ମହାର୍ଘ ସ୍ମୃତିରେ 'ବନାନୀ' ସମର୍ପିତ ସେମାନଙ୍କର କାଷ୍ଠକାୟାରେ ହିଁ 'ବନାନୀ'ର ପ୍ରତ୍ୟେକ କୋଠରୀ ସୁସଜ୍ଜିତ । ଶିମିଳିପାଳ୍– ଶାଳରେ ତିଆରି ଗମ୍ବୁଜାକାର ଅତିଥିଶାଳା, କର୍ଲପାଟ୍, ଶୈଶବ– ଶସର କୃଷ୍ଣକାୟ ଶୋଫାସେଟ୍, ଦଣ୍ଡକାରଣ୍ୟ ରକ୍ତ ଚନ୍ଦନର ହିରଣ୍ୟ–ଗର୍ଭ ନଭୋମଣ୍ଡଳରେ ପ୍ରସ୍ତୁତ ଡ଼ାଇନିଂସେଟ୍, ମେଜ୍, ଟିପୟ, ଫୁଲବାଣୀ ଚନ୍ଦନରେ ନିର୍ମିତ ଗଜଦନ୍ତ ଖଚିତ ବିଶାଳ ପଲଙ୍କ, ଦଶପଲ୍ଲାର ଶୁଦ୍ଧ ସାଗୁଆନ୍‌ରେ ଖୋଦିତ ଦ୍ୱାରବନ୍ଧ ଓ କବାଟ । କେବଳ ସେତିକି ନୁହଁ ଥୁଆମୂଲ୍ ରାମ୍‌ପୁରର ଗୟଳ, କାଶୀପୁର୍‌ର ମହାବଳ, ଫୁଲବାଣୀର କୃଷ୍ଣକାୟ ଚିତା, କଳାହାଣ୍ଡିର କୃଷ୍ଣସାର, ମଦନପୁରର ବିଶାଳକାୟ ଦନ୍ତାଧିପ ଗଜରାଜ, କେଉଁଝରର ଭଲ୍ଲୁକ, କୃଷ୍ଣ ପ୍ରସାଦର ସାରସ ଏପରିକି, ଆଠଗଡର ବନ୍ୟ-ଶ୍ୱାନ ଏବଂ ରାମଶିଆଳ ମୋର ଦକ୍ଷ ଲକ୍ଷ୍ୟରେ ଲାଖି, ରୁଚିବୋଧର ବିଚିତ୍ର ବର୍ଣ୍ଣାଳୀର ଅଙ୍ଗିଆରରେ, ବନାନୀର ପ୍ରତ୍ୟେକ କାନ୍ଥରେ ପ୍ରତିନିଧିତ । ସତ କହିବାକୁ ଗଲେ ସନ ସତଚାଳିଶରୁ ଅଶୀ, ମୋର ଚାକିରିକାଳ, ସହସ୍ର ଅରଣ୍ୟର ସାମୂହିକ ବିନାଶ, ଅସୁମାରୀ ବନ୍ୟପଶୁଙ୍କର ସବଂଶ ସଂହାରରେ ହିଁ ଅତିବାହିତ ହୋଇଗଲା । ଜୀବିକା ନିର୍ବାହ ପାଇଁ ଏପରି ମହାନ୍ ବୃତ୍ତିର ପଟାନ୍ତର ନାହିଁ । ଈର୍ଷାପରାୟଣ ଜନତା କିନ୍ତୁ ମୋର ସନ୍ତାନ–ଶୂନ୍ୟ– ଜୀବନ, ଅକାଳରେ ପତ୍ନୀଙ୍କର ନିଧନ, ଦ୍ୱିତୀୟବାର ହୃତ୍‌ପିଣ୍ଡର ମାରାତ୍ମକ ପୀଡ଼ନକୁ, ମୋର ଉତ୍ସର୍ଗୀକୃତ କର୍ମର ପ୍ରଚ୍ଛନ୍ନ ପରିଣାମ ବୋଲି, ଅଭିଯୋଗ କରନ୍ତି ତେବେ, ଆଜିର କାହାଣୀ ମୋର ନିଜର ନୁହଁ ଆଉ ଜଣଙ୍କର ।

ଏ ମଧ୍ୟରେ କଳାହାଣ୍ଡିର ମାଣିକ୍ୟରତ୍ନର ଆବିଷ୍କାର ଖବରଟି ଯେ ଏତେ ସୁଦୂର ପ୍ରସାରୀ ହେଲଣି ତାହା ମୋର କଳ୍ପନା ବାହାରେ ଥିଲା । ମୁଁ କେବଳ

ଭବୁଥିଲି କଳାହାଣ୍ଡିର କଂକାଳ–ସାର ଭିଖାରୀଙ୍କ ଫଟୋଚିତ୍ରକୁ ଆଶ୍ରା ଓ ଆୟୁଧ କରି ସାମ୍ବାଦିକ, ରାଜନୀତିକ ସାହିତ୍ୟିକମାନେ ନାମକରା ପୁଞ୍ଜିକରି ସାରିଲେଣି । କିନ୍ତୁ କେଇଦିନ ତଳେ, ହଠାତ୍ ସୁଦୂର ଆମେରିକାର ବୋଷ୍ଟନ୍ ସହରରେ ଜଣେ ବିତ୍ତଶାଳୀ ଡ଼ାକ୍ତର ଯୁବକ କଳାହାଣ୍ଡିର ମାଣିକ ସଂଧାନରେ ଆସି, ମୋର ଦ୍ୱାରସ୍ଥ ହେବାରେ ମୁଁ ବିସ୍ମିତ ହୋଇଥିଲି ।

ଯୁବକ ଜଣକ ତାଙ୍କ ପିତାଙ୍କ ଠାରୁ ମୋ ନାମରେ ଖଣ୍ଡେ ପତ୍ର ମଧ୍ୟ ଆଣିଥିଲେ । ଦୁଇବର୍ଷ ତଳେ ପତ୍ନୀ ବିୟୋଗ ପରେ, ଶଯ୍ୟାଶାୟୀ ପିତା, ମୃତ୍ୟୁ ପୂର୍ବରୁ ଏଇ ଚିଠିଟି ପୁତ୍ରକୁ ଦେଇଥିଲେ ମୋ ଉଦ୍ଦେଶ୍ୟରେ । ଚିଠିଟିରେ କ’ଣ ଲେଖାହୋଇଛି, ସେ ଜାଣନ୍ତିନାହିଁ, କିନ୍ତୁ ମୃତ୍ୟୁ ପୂର୍ବରୁ ପିତା ଯେଉଁ ସୂଚନା ଦେଇଥିଲେ ସେଥିରୁ ସେ ଅନୁମାନ କରନ୍ତି ଯେ, ତାଙ୍କ ପିତା ଏକଦା ଭାରତରେ ଥିବାବେଳେ, କଳାହାଣ୍ଡିର କର୍ଲାପାଟ ଜଙ୍ଗଲ ମଧ୍ୟରେ, ମୋ ସହ ଶିକାର ସମୟରେ, ଅକସ୍ମାତ୍ ଏକ ବିଶାଳ ମାଣିକ ଭଣ୍ଡାରର ସନ୍ଧାନ ପାଇଥିଲେ । ସେହି ଅବସ୍ଥାରେ ରତ୍ନ–ଖଣ୍ଡମାନ ସଙ୍ଗରେ ଘେନିଆସିବା ସମ୍ଭବ ନଥିଲା, ତେଣୁ ସମଗ୍ର ରତ୍ନଖଣ୍ଡକୁ ଏକ ଦୁର୍ଗମ ଗୁମ୍ଫାରେ ସୁରକ୍ଷିତ କରି, ଏକ ବିଶାଳ ଶିଳାଦ୍ୱାରା ଅବରୁଦ୍ଧ କରିଦେଇଥିଲେ । ଏଭଳି ଦୁର୍ଲଭ ରତ୍ନକୁ ହାତଛଡ଼ା ନକରି, ପୁତ୍ରସହ ସମଭାଗରେ ବଣ୍ଟନ କରିନେବା ପାଇଁ ପିତା ସମ୍ଭବତଃ ଚିଠିଟିରେ ଅନୁରୋଧ କରିଥାଇ ପାରନ୍ତି ।

ମୁଁ ଚିଠିଟି ପଢ଼ିଲି । ସେଇକ୍ଷଣି, କଳାହାଣ୍ଡିର କର୍ଲାପାଟ ଜଙ୍ଗଲରୁ 'ଗୁପ୍ତ–ରତ୍ନ ଭଣ୍ଡାରର ସନ୍ଧାନରେ ଆମେ ବାହାରି ପଡ଼ିଲୁ ।

ଭବାନୀପାଟଣା ଠାରୁ ପଚିଶ ମାଇଲ୍ ପରେ, ଆମେ ଗାଡ଼ିକୁ ଜଙ୍ଗଲ କଡରେ ଥୋଇ, ନିବିଡ଼ ଜଙ୍ଗଲ ଦିଗରେ ଆଗେଇଲୁ । ସଙ୍ଗରେ କିଛି ଖାଦ୍ୟ ଏବଂ ବନ୍ଧୁକ । ସନ୍ଧ୍ୟା ହୋଇ ସାରିଥାଏ । ଆମେ ସାର୍ଚ୍ଚଲାଇଟ୍ ସାହାଯ୍ୟରେ ପାହାଡ ଅତଡା ମାନ ସତର୍କରେ ଡ଼େଇଁବାକୁ ହେଉଥାଏ । ଆମର ଲକ୍ଷ୍ୟସ୍ଥଳ ପାଖେଇବା ଆଗରୁ ଆମେରିକୀୟ ଯୁବକକୁ ମୋର ଜୀବନର କାହାଣୀଟିଏ କହିଥିଲି ।

ଗ୍ରିଶ ବର୍ଷ ତଳେ ମୁଁ ବନପାଳ ଭବରେ ପ୍ରଥମ ନିଯୁକ୍ତି ପାଇଥାଏ । ଗୋଟାଏ ଜଳସେଚନ ଯୋଜନାରେ । ଯୋଜନାରେ ନିର୍ମାଣାଧୀନ ବନ୍ଧ ଯୋଗୁଁ ସମ୍ଭାବିତ ଜଳାଶୟର ହଜାର ହଜାର ଏକର ବନଭୂମିରେ ବୃକ୍ଷାଦି ବନ ସମ୍ପଦର ତଡ଼ିତ୍ ଅପସାରଣ ଥିଲା ମୋର ଦାୟିତ୍ୱ । ଯୋଜନାରେ କର୍ମରତ ସରକାରୀ କର୍ମଚାରୀଙ୍କର ଗୋଟାଏ ଚମତ୍କାର କଲୋନୀ ସେଇଠି ଗଢ଼ିଉଠୁଥାଏ । ଡ୍ୟାମ୍ ନିର୍ମାଣ କାମ ପ୍ରାୟ ଶେଷ ହୋଇ ଯାଇଥାଏ । ଡ୍ୟାମ୍ ଫାଟକ ମାନ ବନ୍ଦ କରି-ଦେବା କ୍ଷଣି କେଇ ଘଣ୍ଟାରେ ଶହେଫୁଟ୍ ପାଣି, ବିସ୍ତୃତ ବନାଞ୍ଚଳରେ ମାଡ଼ିଯିବ । ସେଥିପାଇଁ ଆବଶ୍ୟକ ପ୍ରସ୍ତୁତି ଚାଲୁଥାଏ ।

କଲୋନୀ ମଧ୍ୟରେ ମୋ ଘର ସମ୍ମୁଖରେ ଥାଏ ଗୋଟାଏ ସୁନ୍ଦର ଫୁଲ ବଗିଚା । ସେଠିକି କଲୋନୀର ଟିକି ଟିକି ପିଲାମାନେ ଖେଳିବାକୁ ଆସନ୍ତି । ଫୁଲ ବଗିଚା ସାର ପ୍ରଜାପତି ମାନଙ୍କୁ ଗୋଡାଇ ଗୋଡ଼ାଇ ଧରିବା ତାଙ୍କର ସଉକ । ଦିନେ ଦେଖିଲି, ଚାରିଜଣ ଡଉଲ୍ ଡ଼ାଉଲ୍ ପିଲା ଫୁଲ ବଗିଚାରେ ଖେଳୁଛନ୍ତି । ଜଣେ ଆରଜଣକୁ ପଚାରୁଛି "ବାବୁନା, କହିଲୁ ଏଇ ଡ୍ୟାମ୍ କିଏ ତିଆରି କରୁଛି ।"

ବାବୁନା ନାମକ ପିଲାଟି ଚଟ୍‌କିନା ଉତ୍ତର ଦେଲା, "ମୋ ବାପା ପରା ଇଞ୍ଜିନିୟର୍, ସେ ତିଆରି କରୁଛନ୍ତି" ତାଙ୍କ ମଧ୍ୟରୁ ତୃତୀୟ ବାଳକ ବାଧାଦେଇ କହିଲା । "ତୁ ମିଛ କହୁଚୁ, ସେ ରମୁ ବୁଲଡ଼ୋଜର ବାଲା ଡ୍ୟାମ୍ ତିଆରି କରୁଛି ମୁଁ ନିଜେ ଦେଖିଛି ।"

ସେତିକିବେଳେ କଲୋନୀର ସଦ୍ୟ ନିର୍ମିତ ମନ୍ଦିର ପୂଜାରୀ ବ୍ରାହ୍ମଣ ଫୁଲ ପାଇଁ ବଗିଚାକୁ ଆସି ଫୁଲ ତୋଳୁଥାଏ । ତାକୁ ଘେରିଯାଇ ପିଲାଏ ପ୍ରଶ୍ନ କଲେ "ମଉସା, ଏଇ ଡ୍ୟାମ୍ କିଏ ତିଆରି କରୁଛି ?" ପୂଜାରୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ "ପିଲାମାନେ ! ଏଇ ଡ୍ୟାମ୍‌ଟି ଭଗବାନ ନିଜେ ତିଆରି କରୁଛନ୍ତି, ସବୁ ଠାକୁରଙ୍କ ଲୀଳା ।"

ପୂଜାରୀ ସିନା ଚାଲିଗଲେ ଉତ୍ତରଟି କିନ୍ତୁ ପିଲାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେ ମଧ୍ୟରୁ ଜଣେ କହିଲା, ଏଇଟା କେମିତି ହେଲା, ଆମ ଘରେ ଖଟୁଲୀରେ ଠାକୁର ସଦାବେଳେ ବସିଛନ୍ତି, ସେତ କେଉଁ ସାଇଟ୍‌କୁ ମୋ ବାପା ଭଳି ଯିବା ଦେଖି ନାହିଁ, ଆସ ଦେଖିବା ।

ତା'ପରେ କିଛିକ୍ଷଣ ପାଇଁ ଗୁଣିଜଣଯାକ ପାଖଘର ଭିତରକୁ ଗ୍ଲଲିଗଲେ । ତା'ପରେ ପୁଣି ମୋର ଝରକା ସାମ୍ନା ବଗିଗ୍ଭକୁ ସେମାନେ ଫେରି ଆସିଲେ । ଜଣେ ବୁଝାଇ କହୁଥାଏ, "ପପୁନ୍ ! ତୁ ଯେଉଁ ଠାକୁର ଦେଖାଇଲୁ, ତାହା ଠାକୁରଙ୍କ ଫଟୋ, ସତ ଠାକୁର ସେଇଠି ନାହାଁନ୍ତି" ଆଉ ଜଣେ କହିଲ "ତାହା-ହେଲେ ଠାକୁର ସତରେ ରହନ୍ତି କେଉଁଠି ?

ଗ୍ଭରିଜଣ ପିଲ ହାତରେ ଗୋଟାଏ ଗୋଟାଏ ସୁନ୍ଦର ପ୍ରଜାପତି ଧରି, ମୋ କୋଠରୀକୁ ପଶିଆସିଲେ । ମୋତେ ଏକା ସ୍ୱରରେ ପ୍ରଶ୍ନକଲେ "ମଉସା ! ମଉସା ! ଏଇ ଡ୍ୟାମ୍ ପଘ ଠାକୁର ଗଢୁଛନ୍ତି, ସେ କେଉଁଠି ରହନ୍ତି, ତାଙ୍କୁ କେମିତି ଦେଖିହେବ ?"

ଏମିତି ଏକ ଅନନ୍ତ ଗୂଢ଼ ପ୍ରଶ୍ନରେ ମୁଁ ନିର୍ବାକ୍ ହୋଇଗଲି । ଭଗବାନଙ୍କର ଠିକଣା ପଗ୍ଭରୁଥିବା ନିରୀହ ଶିଶୁମାନେ, ଉତ୍କଣ୍ଠାରେ ମୋତେ ଆଁ କରି ଅନାଇ ରହିଥିଲେ । ତାଙ୍କ ମଧ୍ୟରେ ଡ଼ାକ୍ତର ମୁଖାର୍ଜୀଙ୍କର ପୁଅ ପପୁନ୍‌ଟି ଖୁବ୍ ସୁନ୍ଦର ଦେଖାଯାଉଥାଏ । ତାକୁ କୋଳକୁ ଟେକିଆଣି କହିଲି, "ପିଲଏ, ସତରେ ଏଇ ଡ୍ୟାମ୍ ଠାକୁରହିଁ ଗଢ଼ିଛନ୍ତି, ସେ ଆମକୁ ମଧ୍ୟ ଗଢ଼ିଛନ୍ତି । ଏଇ ବଗିଗ୍ଭ, ଫୁଲ, ପ୍ରଜାପତି, ସବୁ ତାଙ୍କର । ତେବେ ସେ ଆମଭଳି ହଟ୍ଟଗୋଳ ମଧ୍ୟରେ ରହନ୍ତି ନାହିଁ । ସେ ରହନ୍ତି ନିର୍ଜନରେ ଯେଉଁଠି କୌଣସି ଲୋକବାକ ରହନ୍ତି ନାହିଁ । ତମେ ଧ୍ରୁବକଥା ଶୁଣିଥିବ ?"

ଜଣେ ପିଲ ଉତ୍ତର ଦେଲ "ହଁ" । ମୁଁ ପୁଣିଥରେ ସେଇ ଧ୍ରୁବ କାହାଣୀ କହିଟିଲି ।

"ଧ୍ରୁବ ଘନ ଜଙ୍ଗଲରେ ଭଗବାନଙ୍କୁ ପାଇଥିଲ । ଆଉ ତମେ ଏଇ କଲୋନୀରେ ଭଗବାନ ଖୋଜିଲେ ପାଇବ କେମିତି ? ଆଉ ଗୋଟିଏ କଥା, ତମେ ସବୁ ପ୍ରଜାପତି ଧରିଛ । ପ୍ରଜାପତି ଆଉ ଜଙ୍କି ଧରିବା ବେଳେ ତମେ କେମିତି ଚୁପ୍‌ଗ୍ଭପ୍ ଗୋଡ଼ଟିପି ଟିପି ଯାଅ । ଯେମିତି ଟିକିଏ ଶବ୍ଦ ହେଲେ ଜଙ୍କି ଉଡ଼ିଯାଏ, ସେମିତି ଯେଉଁଠି ମଣିଷଙ୍କ ପାଟିଶବ୍ଦ ସେଇଠି ଠାକୁର ରହନ୍ତି ନାହିଁ । ସେଇ ଦୂର ବନ-ଭୂମିରେ ନିଷ୍ଠଳରେ ଧ୍ୟାନ କଲେ ତମେ ସିନା ଠାକୁରଙ୍କ ସନ୍ଧାନ ପାଇବ ।

ଏକଥା କହିବା ବେଳେ, ଦୂର ଉପତ୍ୟକା ଶେଷରେ ଦୃଶ୍ୟମାନ ବଣ ଆଡକୁ ମୁଁ ଆଙ୍ଗୁଠି ନିର୍ଦ୍ଦେଶ କରି ଦେଇଥିଲି । ପିଲାଏ କ'ଣ ବୁଝିଲେ ଜାଣି ନାହିଁ, କିଛିକ୍ଷଣ ପରେ ସେମାନେ ନୀରବରେ କୋଠରୀ ଛାଡ଼ି ବାହାରିଗଲେ ।

ସେଦିନ ସନ୍ଧ୍ୟାବେଳେ ଡ୍ୟାମ୍‌ର କବାଟ ସବୁ ବନ୍ଦ କରହେଲା । ତା'ପରେ ଅଶ୍ରାଏ ବର୍ଷା ମଧ୍ୟ ହୋଇଗଲା । ଡ୍ୟାମ୍ ସାଇଟ୍‌ରୁ କଲୋନୀକୁ ଫେରି ଶୁଣିଲି ସେଇ ଚାରିଜଣ ପିଲା, ପପୂନ୍, ବବୁନ୍, ଟୁକୁନା ଏବଂ ବାବୁନା କେଉଁଆଡ଼େ ଚାଲିଯାଇଛନ୍ତି ।

ରାତି ନଅଟା ପର୍ଯ୍ୟନ୍ତ ଚାରିଆଡ଼େ ଧାଆଁ ଦଉଡ଼ ଆରମ୍ଭ ହେଲା । ପିଲାଙ୍କ ଘରେ କାନ୍ଦ ବୋବାଳି ଖେଳିଗଲା । ଜିପ୍ ଗାଡ଼ି ଧରି ଆମେ ଆଖ ପାଖ ଅଞ୍ଚଳ ମାନ ଖୋଜିବାକୁ ବାହରିଲୁଁ । ଠିକ୍ ରାତି ଦଶଟା ବେଳକୁ ଇଞ୍ଜିନିୟର୍ ବାବୁଙ୍କ ପୁଅ ବାବୁନା ଏବଂ ଟୁକୁନା ଦୁଇ କି. ମି. ଦୂର ଗୋଟାଏ ଜଙ୍ଗଲ ମଧ୍ୟରୁ ଆସୁଥିବା ଦେଖାଗଲା । ଅନ୍ୟ ଦୁଇଜଣଙ୍କର ଖବର ତାଙ୍କଠାରୁ ଶୁଣିଲୁ । ବାବୁନା କହିଲା, ମୋ କଥାନୁସାରେ ସେମାନେ ସମସ୍ତେ ଠାକୁରଙ୍କୁ ଦେଖିବା ପାଇଁ ସେଇ ଜଙ୍ଗଲକୁ ଯାଇଥିଲେ । ସେମାନେ ଜଙ୍ଗଲ ମଧ୍ୟରେ ନିର୍ଜନରେ ଠାକୁରଙ୍କୁ ଜଗିଥିଲେ । ଅଶ୍ରାଏ ବର୍ଷାପରେ ବାବୁନାକୁ ଛିଙ୍କ ଆଉ କାଶ ହେଲା । ପପୂନ୍ ଯିଏ ଠାକୁର ଦେଖାର ନେତୃତ୍ୱ ନେଇଥିଲା ସେ ତାକୁ ରାଗିଲା ଏବଂ କହିଲା, ଏମିତି କାଶ ହେଲେ ଠାକୁର ଆଉ ଦେଖାଦେବେ ନାହିଁ । ବାଧ୍ୟହୋଇ ବାବୁନା ଏବଂ ଟୁକୁନା ମନଦୁଃଖରେ ତାଙ୍କୁ ଠାକୁରଙ୍କୁ ଜଗିବା ପାଇଁ କହି ଚାଲି ଆସିଲେ । ତାଙ୍କର ଦୃଢ ବିଶ୍ୱାସ ଠାକୁରଙ୍କୁ ସେମାନେ ଦେଖିବେ ।

ବାବୁନା ଆଉ ଟୁକୁନା ଠାରୁ ଏହି ଖବର ଶୁଣି ଆମେ ପିଲାମାନେ ଯାଇ-ଥିବା ଜଙ୍ଗଲ ଆଡ଼େ ଦଉଡ଼ିଥିଲୁ । କିନ୍ତୁ ବେଶ୍ ବିଳମ୍ବ ହୋଇଯାଇଥିଲା । ଆମେ ଯଥା ସ୍ଥାନରେ ମୋଟେ ପହଞ୍ଚି ପାରିନଥିଲୁ । କିଛି ଘଣ୍ଟା ଆଗରେ ସମଗ୍ର ବନ-ଭୂମିଟି ସଂପୂର୍ଣ୍ଣ ଜଳାର୍ଣ୍ଣବ ହୋଇ ସାରିଥିଲା । ଯେଉଁଠି ପିଲାଏ ଠାକୁରଙ୍କୁ ଅପେକ୍ଷା କରିଥିଲେ ସେଇ ଅଞ୍ଚଳରେ ପଚାଶ ଫୁଟ ଗଭୀର ପାଣି ଲହଡ଼ି ଭାଙ୍ଗୁଥାଏ ।

ଦୁଇଦିନ ପରେ ଡ୍ୟାମ୍ କଡ଼ରେ ପପୂନ୍ ଏବଂ ବବୁନ୍‌ର ଶବ ଭାସୁଥିବାର ଦେଖାଗଲା । ଜୋତା ମୋଜା, ହାପ୍‌ପେଣ୍ଟ୍ ପିନ୍ଧା ଶିଶୁ ଦୁଇଟିର ଫୁଲନ୍ତା ଶବ

ଦୁଇଟି ଜଳାଶୟରୁ ଯେତେବେଳେ ଜାଲରେ ଉଦ୍ଧାର କରଗଲା, ଉପସ୍ଥିତ ସମସ୍ତ ନର ନାରୀ 'ଭେ' 'ଭେ' କାନ୍ଦି ଉଠିଥିଲେ ।

ପପୁନ୍‌ର ପିତା ମୋର ପଡ଼ୋଶୀ ଡଃ ମୁଖର୍ଜୀ । ସେ କୌଣସି ମତେ ନିଜକୁ ସମ୍ଭାଳି ନେଇଥିଲେ । ପପୁନ୍‌ର ମାଆ କିନ୍ତୁ ପାଗଳୀ ପ୍ରାୟ, କଲୋନୀର ପ୍ରତ୍ୟେକ ବଗିଚାର କୋଣ ଅନୁକୋଣରେ, ଆପଣା ପପୁନ୍‌କୁ ଖୋଜି ବୁଲିଥିଲେ । ଡାକ୍ତରବାବୁ ବାଧ୍ୟହୋଇ ବଦଳି ହୋଇ ଏହି କଳାହାଣ୍ଡିକୁ ଗୁଳି ଆସିଥିଲେ ।

ମୋର ମଧ୍ୟ ଘଟଣାର କେଇ ମାସ ମଧ୍ୟରେ କଳାହାଣ୍ଡିକୁ ବନପାଳ ଭାବରେ ବଦଳି ହୋଇଥିଲା । ଏବଂ ଡାକ୍ତର ବାବୁ ଭବାନୀପାଟଣାରେ ମୋର ପୁନର୍ବାର ପଡ଼ୋଶୀ ହୋଇଥିଲେ ।

ଡାକ୍ତର ବାବୁ କିନ୍ତୁ ବେଶ୍ ବଦଳି ଯାଇଥିଲେ । ଏକଦା ସଂପୂର୍ଣ୍ଣ ନିରାମିଷ ଶ୍ରୀ ଗୁରୁ ଦୀକ୍ଷିତ ଡ଼ାକ୍ତରବାବୁ ବଡ଼ ଶିକାର ପ୍ରିୟ ହୋଇଯାଇଥିଲେ । ଏହି ପରିବର୍ତ୍ତନ ଥିଲା ବଡ଼ ଅସ୍ୱାଭାବିକ । ସେ ବିଦେଶୀ ବନ୍ଧୁକଟିଏ କିଣିଥିଲେ ଏବଂ ମୋ ସହ ପ୍ରାୟତଃ ଶିକାର ପାଇଁ ଜଙ୍ଗଲ ଯାଉଥିଲେ ।

ଆମେ ସେଇ ସମୟରେ ଏଇ କର୍ଲାପାଟକୁ ଅନେକଥର ଶିକାର ପାଇଁ ଆସୁଥିଲୁ ଏବଂ ଆମକୁ ଏଇ ଉପତ୍ୟକାରେ ରହୁଥିବା ମାଙ୍ଗ୍‌ତା ନାମକ ଜଣେ କୁଟିଆ ସର୍ଦ୍ଦାର୍ ବହୁତ ସାହାଯ୍ୟ କରୁଥିଲା । ବାଘ, ଗୟଳ, ହରିଣର ସଠିକ୍ ସନ୍ଧାନ ଦେଇ ଆମର ଅତିପ୍ରିୟ ହୋଇ ପାରିଥିଲା ।

ଦିନକର ଘଟଣା । ଡାକ୍ତର ବାବୁଙ୍କୁ ଶିକାର ନିଶା ଏମିତି ଘାରିଥାଏ ଯେ ଦିନ ଦୁଇଟାରୁ ଆସି ମୋ ଘରେ ହାଜର୍ । ବାଧ୍ୟହୋଇ କେଇଜଣ ଫରେଷ୍ଟ ଗାର୍ଡ ସହ ଜିପ୍‌ରେ ବସିଲି ଏଇ କର୍ଲାପାଟ ଅଭିମୁଖରେ ।

ସେଦିନ ଯୋଗ ଭଲ ନଥିଲା । ଆମେ କୁଟିଆ ପଦର୍ ଠାରୁ ମାଙ୍ଗ୍‌ତାକୁ ନେଇଯିବା ପାଇଁ ଯାଇ ଦେଖିଲୁ, ସେଠି କୁଟିଆ ମାନଙ୍କର ଗୋଟାଏ ବଡ

ମହୋତ୍ସବ ଚାଲିଛି । ସେଇଠି ହୋଇ ପୁନେଇ ଠାକୁରଣୀଙ୍କର ଠାରେ ନାଚ ଗୀତ, ଢ଼ାବ ଏବଂ ଢୋଲର ପ୍ରତିଯୋଗିତା ଚାଲିଛି । ବୁଝିଲୁଁ, ସେଦିନ ମାଙ୍ଗ୍‌ତାକୁ ଠାକୁରଣୀ ସ୍ୱପ୍ନାଇଲେ ଯେ, ଗାଁର ମାଟିଆ କୁଟିଆ, ଏଣିକି 'ଜାନୀ' ବା ସର୍ଦ୍ଦାର ହୋଇ କୁଟିଆଙ୍କୁ ରକ୍ଷା କରିବ, ମାଆଙ୍କର ଆଦେଶ । ଏଇ ପ୍ରଥାରେ ହିଁ କୁଟିଆ ସର୍ଦ୍ଦାର ମନୋନୀତ ହୋଇଥାଏ । ତେଣୁ ମାଟିଆ କୁଟିଆ ଆଜିଠାରୁ 'ଜାନୀ' ହୋଇଛି, ସେ ଆଉ ଦାର ଗ୍ରହଣ କରିବ ନାହିଁ । ଚିର କୁମାର ରହିବା ବିଧି ଅଛି ।

ଏଇ ମହୋତ୍ସବର ନାୟକ ମାଟିଆ ସହ ମଧ୍ୟ ଆମର ଦେଖାହେଲା । ଆମେ ତାକୁ କିଛି ଟଙ୍କା ଏବଂ ବିଦେଶୀ ରମ୍ ବୋତଲଟିଏ ଉପହାର ଦେଇଥିଲୁଁ । ଯୁବକ ମାଟିଆ କିନ୍ତୁ ମହୁଲି ଖାଇ ଆମକୁ ଯାହା କହିଲା ତହିଁରୁ ଆମର ଅନୁମାନ ହେଲା ଯେ ସେ ଜାନୀପଦପାଇ ଖୁସି ନୁହେଁ । ସେ ଏଇ ମାଙ୍ଗ୍‌ତା ଦ୍ୱାରା ଅନ୍ୟାୟରେ ଗାଁରୁ ତଡ଼ା ଖାଇଥିବା ଜଣେ ବିଧବା କୁଟିଆ ଯୁବତୀକୁ ବିବାହ କରିବାକୁ ଚାହିଁଥିଲା । ବିଚରା ଆଗରୁ ଦୁଇଥର ବିବାହ କରିଥିଲା, କିନ୍ତୁ ବିବାହ ପରଦିନ ହିଁ ଜଣକୁ ସାପ କାମୁଡ଼ିଥିଲା ଏବଂ ଆଉ ଜଣକୁ ବାଘ ନେଇଗଲା । ମାଙ୍ଗ୍‌ତା ଜାନୀର ପୁତୁରା ଥିଲା ଦ୍ୱିତୀୟ ବର । ତାପରେ ଜାନୀ ମାଙ୍ଗ୍‌ତା କୁଟିଆ ସଭାରେ ଘୋଷଣା କଲା ଯେ ସେହି ଯୁବତୀ ଠାକୁରଣୀ ଦ୍ରୋହିଣୀ, ଏବଂ ତାକୁ ଗାଁର ସମସ୍ତେ ତଡ଼ିଦେଲେ । ଝିଅଟି ବର୍ଷେହେଲା, ନିକଟସ୍ଥ ଏକ ପାହାଡ଼ ଗୁମ୍ଫାରେ ରହୁଛି । ମାଟିଆ ତାକୁ ଭଲପାଏ ଏବଂ ତାହାର ବିବାହ ଇଛା ମାଙ୍ଗ୍‌ତାକୁ ଜଣାଇଥିଲା ।

ବୃଦ୍ଧ ଜାନୀ ମାଙ୍ଗ୍‌ତା କିନ୍ତୁ ଶୁଣିବାକୁ ନାରାଜ୍ । ଠାକୁରଣୀଙ୍କର ସ୍ୱପ୍ନାଦେଶକୁ ଅବମାନନା କରିବାକୁ ସିଏବା କିଏ ? ଯାହାହେଉ ମାଟିଆ କୁଟିଆ 'ଜାନୀ' ଭାବରେ ଅଧିଷ୍ଠିତ ହେବାପରେ, ଠାକୁରଣୀଙ୍କର ଆଦେଶ ମାନି, ଆପଣା ଦୁଃଖକୁ ଗ୍ରହଣ କରି ସାରିଥିଲା ।

ଏମିତି ଏକ ଅଭାବନୀୟ ହଟଗୋଳ ମଧ୍ୟରେ ଡ଼ାକ୍ତର ବାବୁ କିନ୍ତୁ ବଡ଼ ହତାଶ ହୋଇଗଲେ । ସେଦିନ ଆଉ କୌଣସି ଶିକାର ଆଶା ନରଖି ଆମେ ଫେରିବା ଆରମ୍ଭ କଲୁଁ ।

ଆମେରିକୀୟ ଯୁବକ ମୋର କଥା ଶୁଣି ଶୁଣି ନିରବରେ କେବଳ ଯନ୍ତ୍ର ମୋତେ ଅନୁସରଣ କରୁଥାଆନ୍ତି । ଆମେ ଗୋଟାଏ ପାହାଡ଼ୀ ଝରଣା କୂଳେ କୂଳେ ଯାଉଥାଉଁ । ମଝିରେ ମଝିରେ ମାଟି ଅତଡ଼ା ଖସିଯାଇଥିବା ଯୋଗୁଁ ଆଗେଇବା ମୋତେ ସୁବିଧା ହେଉନଥାଏ । କିଛି ସମୟପରେ ଆମେ ଗୋଟାଏ ବଡ଼ ପାହାଡ଼ ଅତିକ୍ରମ କରିଦେଲୁଁ । ସେଇଠୁଁ ନିବିଡ଼ ଅରଣ୍ୟର ବିସ୍ତୃତ ଉପତ୍ୟକା ।

ଆମେ ଆଗରେ ଗୋଟାଏ ପାଖରେ ନିଆଁ ଜଳୁଥିବା ଲକ୍ଷ୍ୟ କଲୁଁ ଏବଂ ସେଇ ଦିଗକୁ ଆଗେଇଲୁଁ । ନିକଟ ହେବାରୁ ଦେଖିଲୁଁ, ସେଇଟା ଗୋଟାଏ ପାହାଡ଼ ଗୁମ୍ଫା । ଆମେ ଦୂରରୁ ପରିଷ୍କାର ଦେଖିଲୁଁ, ଜଣେ ଝାମ୍ପୁରବାଳ, ଦୀର୍ଘକାୟ, ବଳିଷ୍ଠ କୁଟିଆ ସେଇଠି, ବିଶାଳ ଶାଳ ଗଛର ଗଣ୍ଡିଟିଏରେ ନିଆଁ ଜାଳି, ସେଇ ଗୁମ୍ଫାର ଶିଳା ଦିହରେ କିଛି ସିନ୍ଦୂର ନେଶିଦେଉଛି ଏବଂ ପଥରକୁ ମୁଣ୍ଡରେ ଲଗାଉଛି । କିଛିକ୍ଷଣ ପରେ କୁଟିଆ ସେଇଠୁଁ ଉପତ୍ୟକା ମଧ୍ୟକୁ ନିରବରେ ଓହ୍ଲାଇଗଲା ।

ମୁଁ ଆମେରିକୀୟ ଯୁବକଙ୍କୁ କହିଲି ଆମର ଲକ୍ଷ୍ୟ ସ୍ଥଳ ନିକଟ ହେଲାଣି । ତେବେ ଡ଼ାକ୍ତର ବାବୁଙ୍କ କଥା ପୁଣି ଆରମ୍ଭ କଲି । ସେଇ ଗୁମ୍ଫା ନିକଟରେ ଯୁବକଙ୍କୁ ଟିକିଏ ବିଶ୍ରାମ ନେବାକୁ କହିଲି ।

ସେଦିନ ଏଇ ଗୁମ୍ଫା ନିକଟ ଦେଇ ଆମେ କୁଟିଆ ଜାନୀଡାରୁ ନିର୍ଗତ ହୋଇ ଫେରୁଥିଲୁଁ । ହଠାତ୍ ଏଇ ଗୁମ୍ଫା ଆଗରେ ଗୋଟାଏ ମହାବଳ ବାଘ ଲମ୍ଫ ପ୍ରଦାନ କରି ଆମ ଆଗରେ ବିଜୁଳୀ ବେଗରେ ଚାଲିଗଲା । ବାଘର ଲମ୍ଫ ସହ ଏକ ନାରୀ କଣ୍ଠର ଆର୍ତ୍ତନାଦ ମଧ୍ୟ ଶୁଭିଥିଲା । ଡ଼ାକ୍ତର ବାବୁ– ତତ୍କ୍ଷଣାତ୍ ହେଡ୍‌ଲାଇଟ୍ ମାରି, ବନ୍ଧୁକ ଚଳାଇଥିଲେ । ଗୁଳି ଶବ୍ଦ ସହ ବାଘଟି ଶହେ ଗଜ ଦୂରରେ ଗର୍ଜନ କରି ଗଡ଼ିପଡ଼ିଥିଲା । ଆମେ ଦୂରରୁ ଲାଇଟ୍ ଫୋକସ୍ କରି ଦେଖିଲୁଁ, ବାଘ ନିକଟରେ ରକ୍ତାକ୍ତ ଅବସ୍ଥାରେ ଛିଟ୍‌କି ପଡ଼ିଛି ଜଣେ କୁଟିଆ ଯୁବତୀ ।

ଆମେ ସମସ୍ତେ ସାହାସ ଭରି ତାହାର ନିକଟତର ହେଲୁଁ । ଯୁବତୀର ପିଞ୍ଜର ତଥା ବେଳ ବାଘର ଶକ୍ତ ପଞ୍ଜାରେ ବିଦୀର୍ଣ୍ଣ ହୋଇ ରକ୍ତ ନିର୍ଗତ ହେଉଥାଏ । ଯୁବତୀ କିନ୍ତୁ ତଥାପି ବଞ୍ଚିଥାଏ । କଥା କହିପାରୁଥାଏ ।

ଆମକୁ ନିକଟରେ ଦେଖି ବିକଳରେ କହିଲା, "ବାବୁ ମୋ ପେଟର ପିଲା ଦିନଟି ସାରା ବାହାରିବ ବୋଲି ବାହାରି ପାରୁନାହିଁ । ସେଇ ମାଟିଆ କୁଟିଆର ପିଲା ବାବୁ, ମୋତେ ସହାୟ ହୁଅ, ମୋତେ ମାରିଦିଅ ପଛେ, ପିଲାଟିକୁ, ମୋ ଦିହରୁ କାଢିନିଅ ।"

ଡ଼ାକ୍ତର ବାବୁ ମାତ୍ର କିଛିକ୍ଷଣ ନିରବ ରହିଲେ । ତା'ପରେ ଫରେଷ୍ଟ୍ ଗାର୍ଡମାନଙ୍କ ଠାରୁ ମାଂସ କଟା ଛୁରୀ ଏବଂ ପନଖୀ ମାଗିନେଲେ । ଏଇ ଗୁମ୍ଫା ସାମ୍ନାରେ ସ୍ତ୍ରୀଲୋକର ପେଟ ଚିରି ପିଲାକୁ କାଢିଦେଲେ । ସେଇଦିନ ପିଲାଟିର କଇଁ କଇଁ କାନ୍ଦରେ ମଧ୍ୟ-ରାତ୍ରିର ବନଭୂମି କମ୍ପି ଉଠିଥିଲା ।

ସ୍ତ୍ରୀଲୋକଟିର କିନ୍ତୁ ଆଉ ଚେତା ନଥିଲା । ମଝିରେ କେବଳ ଥରୁଟିଏ ଆଖି ଖୋଲି, ପିଲାଟି ଆଡ଼କୁ ଚାହିଁଥିଲା । ବଡ଼ କଷ୍ଟରେ ଡ଼ାକ୍ତର ବାବୁଙ୍କର ପାଦ ଦୁଇଟିକୁ ଜାବୁଡ଼ି ଧରି ବିକଳରେ କହିଥିଲା "ବାବୁ, ତମେ ତାକୁ ଗର୍ଭରୁ କାଢିଛ, ତାକୁ ଫୋପାଡ଼ି ଦିଅନି ବାବୁ, ତମେ ତା'ର ବାପା ମାଆ, ତମେ ତାକୁ ନେଇଯାଅ, ତମର ଗୁହମୁତ ସଫା କରିବ– ବାବୁ ।"

ପରକ୍ଷଣରେ ସ୍ତ୍ରୀଲୋକଟି ନିଥର ହୋଇଗଲା ।

ଖୁବ୍ କମ୍ ସମୟରେ ଏତେ ଘଟଣା ଘଟିଗଲା । ପିଲାଟି ସେମିତି କାନ୍ଦୁଥାଏ ଡ଼ାକ୍ତର ବାବୁ ତାକୁ କୋଳକୁ ଟାଣିନେଇ ଜାବୁଡ଼ି ଧରିଲେ । ପିଲାଟିକୁ ଆପଣା ଚଦରରେ ଭଲକରି ପୋଛି, କିଛି ପାଣି ପିଆଇ ଦେଲେ । ପିଲାଟି ଶୋଇପଡ଼ିଲା । ଡାକ୍ତର ବାବୁ ପିଲାଟିକୁ ମୋ ହାତକୁ ବଢାଇ ଦେଇ, ସେଇ ଗୁମ୍ଫା ଭିତରକୁ ପଶିଲେ । ଗୁମ୍ଫା ଭିତରେ କେତୋଟି ପଥର କାଢି ଗୋଟାଏ ଗାତ ଖୋଳି ଦେଲେ । ସ୍ତ୍ରୀ ଲୋକଟିର ଶବଟିକୁ ଏକା ଟେକିନେଇ ସେଇ ଗାତରେ ପୋତିଦେଲେ । ତା'ପରେ ଏକ ଦୀର୍ଘ ଶିଳାଖଣ୍ଡ ଆଣି ଗୁମ୍ଫା ମୁହଁଟି ବନ୍ଦ କରିଦେଲେ ।

ତା' ପରେ ଡାକ୍ତର ବାବୁ ପିଲାଟିକୁ ନେଇ ତାଙ୍କ ପତ୍ନୀଙ୍କୁ ଦେଇଥିଲେ । ତାଙ୍କର ପାଗଳିନୀ ପତ୍ନୀ ପୁତ୍ରଟିକୁ ପାଇ ପୁଣି ଠିକ୍ ହୋଇଗଲେ, କିନ୍ତୁ ଡ଼ାକ୍ତର-ବାବୁ ବଡ଼ ଗ୍ରକିରିଟେ ଯୋଗାଡ କରି, ଚିରଦିନ ପାଇଁ ଭାରତ ଛାଡ଼ିଦେଇ ସପରିବାର ଆମେରିକା ଗ୍ଳିଗଲେ ।

ଏଯାଏଁ ନିଆଁ ଧାସରେ ଉଷୁମ ଧ୍ୟାନରେ ଚୁପ୍ ଗ୍ରପ୍ ବନ୍ଧୁକ ଧରି ବସିଥିବା ଆମେରିକୀୟ ଯୁବକ, ହଠାତ୍ ଚିତ୍କାର କରି ଉଠିଲେ । ଏକ ଅସମ୍ଭବ କୋହ ଏବଂ ଆବେଗରେ ଗୁମ୍ଫାର ପଥରଟିକୁ ଘସାଇବାରେ ଲଗିଗଲେ । ପଥରଟି ଅକ୍ଳେଶରେ ଗୋଟାଏ କଣକୁ ଖସିଗଲା । ପାଗଳ ଭଳି ଯୁବକ ଓଖାରିଥିଲେ ଦୁଇ ହାତରେ ଗୁମ୍ଫାର ଚଟାଣ । କେଇ ସମୟ ପରେ ତାଙ୍କର ହସ୍ତଗତ ହେଲା କେଇଟି କଂକାଳ । ସେ ମଧ୍ୟରୁ ଶ୍ୱେତବର୍ଣ୍ଣର କେଇଟି କଂକାଳକୁ ଛାତିରେ ଜାବୁଡ଼ି ଧରି ମୋ ନିକଟକୁ ଆସି କଇଁ କଇଁ କାନ୍ଦି ଉଠି କହିଲେ " ମଉସା, ମୋ ମାଣିକର ସନ୍ଧାନ ପାଇଛି ମଉସା ମୋ ମାଣିକର ସନ୍ଧାନ ପାଇଛି । ମୋ ମାଆକୁ ମୁଁ ପାଇଛି ମଉସା, ମୋ ମାଆକୁ ମୁଁ ପାଇଛି । ମୋର ବେରକୁ ମୁଁ ପାଇଛି ମଉସା, ମୋ ଚେରକୁ ପାଇଛି, ମୁଁ ଜଣେ ଡାକ୍ତର ମଉସା । ଥରେ ହାତଛୁଇଁଲେ ଆମେରିକାରେ ହଜାରେ ଡଲାର୍ ପାଏଁ, ମୋର ଅନେକ ସଂପତ୍ତି, ଅନେକ ଡଲାର୍ ଅଛି, କିନ୍ତୁ ଏଇ ମାଆ ଆଉ ମାଟିକୁ ଛାଡ଼ି ମୁଁ ଆଉ ଯାଇପାରିବିନ । ମୁଁ ଯେ ଜଣେ କୁଟିଆ ମଉସା, ମୁଁ ଜଣେ କୁଟିଆ...... ।




ଅହଂକାରର
ପାହାଡ଼ରେ
ଅଂଧ ପଥୁରିଆ

ସହରର ସର୍କିଟ୍ ହାଉସ୍‌ରେ ରାତିରେ ପହଞ୍ଚିଲି ।

ଏଇ ସହରକୁ ଅନେକ ଥର ଆସିଛି, ଖୁବ୍ ଅନ୍ତରଙ୍ଗ ଭାବରେ ତାକୁ ଦେଖିଛି । ଯେତିକି ବେଶି ଦେଖିଛି, ସେତିକି ବେଶି ସମ୍ମୋହିତ ହୋଇଯାଇଛି ତାହାର ଅନନ୍ତ ପ୍ରଶାନ୍ତି ଓ ଆତ୍ମୀୟତାରେ । ଏହାହିଁ ବୋଧହୁଏ ଓଡ଼ିଶାର ଗୋଟିଏ ସହର ଯାହାର ଅତୀତ ଓ ବର୍ତ୍ତମାନ ଉଭୟେ ଅତ୍ୟନ୍ତ ଚିତାକର୍ଷକ । ସୁନ୍ଦର ସୁନ୍ଦର ବୃକ୍ଷ ପରିଷ୍କାର ପରିଚ୍ଛନ୍ନ ରାସ୍ତାଘାଟ । ସହରର ପ୍ରାଣ କେନ୍ଦ୍ର ମନ୍ଦିର ଓ ଆକର୍ଷଣ ରଜା-ଭଆସ । ଦୀର୍ଘ ବଡ଼ଦାଣ୍ଡ, ଦୁଇଧାଡ଼ିର ଘର, ଘରମାନ ମନେହୁଏ ପକ୍ଷୀ କାକଳୀ ଭରା କୁଞ୍ଜ । ଦିଗ୍‌ବଳୟରେ ଶ୍ୟାମ ସିମିଳିପାଳର ଶୃଙ୍ଗ ସମାହାର, ଉପତ୍ୟକାରେ ପ୍ରଶାନ୍ତମୟ ପରିବେଶରେ ପରିପୋଷିତ ଜନଜୀବନ । ଅନ୍ୟ ସହର ମାନଙ୍କରେ ନେଫଡା ଓ ନୁଖୁରା କଲେଜ ଓ କଚେରୀ । ଏଇଠି କିନ୍ତୁ କଲେଜ ଓ କଚେରୀ ସାଂସ୍କୃତିକ ସ୍ୱାଭିମାନ, ସ୍ଥାପତ୍ୟ ଓ ଆଭିଜାତ୍ୟର ପ୍ରଣମ୍ୟ ପ୍ରତିବିମ୍ବ । ପୁଷ୍ପିଳ ଉପତ୍ୟକାର ସମ୍ମୋହନୀ ଜୀବନ-ଯାତ୍ରାରେ ସ୍ୱାଭାବିକ ପ୍ରାଣମୟତା ସୌହାର୍ଦ୍ଦ୍ୟ ଓ ସରଗ ସମ୍ପ୍ରୀତି । ସହରର ମଧ୍ୟ ଭାଗରେ ପ୍ରମୋଦ ଉଦ୍ୟାନ, ମୁକ୍ତ ସ୍ୱଚ୍ଛଳ ଜଳାଶୟ, ଅଥଚ ଅନ୍ୟତ୍ର ସୂର୍ଯ୍ୟୋଦୟ ବେଳର ଦୃଶ୍ୟମାନ, ଅଲକ୍ଷୁଣ, ଅଶ୍ଳୀଳ ଦୁର୍ଭିକଗଙ୍କର ଦୃଶ୍ୟ ନାହିଁ । ସହର ବଜାର ସବୁ କିଛିରେ ଗୋଟାଏ କଳାତ୍ମକ ପୁଟ । ସବୁକିଛି ଏଇଠି ସହଜ ଓ ସୁନ୍ଦର, ପାହାଡ଼ୀ ଝରଣାଟେ ଭଳି, ପ୍ରତ୍ୟେକଟି ଜୀବନ ହସ ହସ, ନିର୍ମଳ ଓ ନିଷ୍ପାପ । ସହରର ଅର୍ଦ୍ଧେକାଂଶ ଆଦିବାସୀ ଅଥଚ ଅନ୍ୟତ୍ର ଦୃଶ୍ୟମାନ କାଙ୍ଗାଳିଆ, ବିକଳିଆ, ହାଡ଼ୁଆ କେହି ବି ନୁହନ୍ତି । ସହଜ ସରଳ ହସହସ, ସଂଜତ ରୁଚିପୂର୍ଣ୍ଣ ବେଶଭୂଷା, ଯୁବକ ଯୁବତୀ-ଙ୍କର ଚଳିଚଳନରେ କମନୀୟ ନମ୍ରତା । କୁଟିଳ କଳୁଷିତ ଓଡ଼ିଶାର ସହର ମାନଙ୍କର ଏକ ମନୋରମ ବ୍ୟତିକ୍ରମ ଏହି ସହର, ବିପୁଳ ପ୍ରାଣମୟ ଉପତ୍ୟକା ବାରିପଦା ।

ସର୍କିଟ୍ ହାଉସ୍‌ରୁ ବାହାରିଲି ଆରଦିନ ପ୍ରାତଃ ଭ୍ରମଣରେ । କଚେରୀ ଆଗରେ ଯିବାବେଳେ ଅଟକି ଗଲି ସ୍ୱର୍ଗୀୟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କର ପ୍ରତିମୂର୍ତ୍ତି ନିକଟରେ । ଶିରରେ ରାଜମୁକୁଟ, ହସ୍ତରେ ଦୀର୍ଘ ତରବାରୀ, ଶ୍ୱେତ

ଧର୍ମ୍ମ ଗୂର୍ଣ୍ଣ ସଂଭ୍ରାନ୍ତ ଆଭରଣ, ସ୍ୱଚ୍ଛ ବେଦୀରେ ସ୍ଥିର ନିଶ୍ଚଳ । ମହାରାଜାଙ୍କର ପାଦ ଦେଶରେ ଆଦିବାସୀ ଯୁବକଟିଏ କିଛି ସାମଗ୍ରୀ ଗୋଟାଏ ପାଛିଆରୁ କାଢ଼ି ସଜାଡୁଥାଏ । ନିକଟକୁ ଯାଇ ଦେଖିଲି କିଛି ପଥୁରୀ ବାସନ । ଯୁବକଟି ପିନ୍ଧିଥାଏ ସବୁଜ ଜାମା ଏବଂ ଖଦୀର ଧୋତି । ଯୁବକଟିର କଳା, ଚିକ୍କଣଦେହ । ହାତରେ ପୋଛି ବାସନ ସବୁ ସଜାଡୁ ଥାଏ ଠିକ୍ ପ୍ରତିମୂର୍ତ୍ତି ଭଳି । ମୁଁ ତହିଁରୁ ଗୋଟାଏ ଉଠାଇ ପଚାରିଲି 'ସିମେଣ୍ଟ ଚଟାଣରେ କଚାଡ଼ିଦେଲେ ଏହା କ'ଣ ଭାଙ୍ଗି ଯିବ ନାହିଁ ?'

ଯୁବକଟି, ମୋ ଆଡ଼କୁ ଚାହିଁ କହିଲା 'ଭାଙ୍ଗି ଯିବ ଯେ, ତାକୁ ଏମିତି ସିମେଣ୍ଟରେ କଚାଡ଼ିବ କେନ ? ସେ କି ଦୋଷ କଲାକି ?"

ମୁଁ ଉତ୍ତର ଦେଲି କିଏ କ'ଣ ଜାଣି ଜାଣି କଚାଡ଼ିବ, ହାତରୁ ଖସିଗଲେ ଭାଙ୍ଗିବତ ?

ଯୁବକ ଏଥର ହସଟିଏ ଖେଳାଇ କହିଲା, 'ତୁମର ଛୁଆ ପିଲା ନାହାଁନ୍ତି କି ବାବୁ, ତାଙ୍କୁ କେମିତି କଚାଡ଼ ? ପିଲାକୁ ଯେତିକି ମାଡ଼ ଚାହିଁତେ, ପଥୁରିକୁ ସେତିକି ମାଡ଼ ଚାହିଁତେ, ଗୋଡ ହାତ ଭାଙ୍ଗିଯାକେ ତାକୁ ମାରିବେ କେନ ?''

ଯୁବକର କଥାରେ ତା'ର ହାତ ତିଆରି, ଦ୍ରବ୍ୟ ପ୍ରତି ଯେଉଁ ଆପଣାର ମମତା, ତାହାହିଁ ଅନୁଭବ କରି ଆଉ କିଛି ସମୟ ରହିଗଲି । ପୁଣି ପଚାରିଲି 'ଏବେ ଅଭଙ୍ଗା ପ୍ଲାଷ୍ଟିକ ବାସନ କେତେ କ'ଣ ଚକଚକିଆ ଚିଜ ବାହାରିଲାଣି, ଏଇ ବାସନ ଆଉ ଲୋକ କ'ଣ କିଣିବେ ? ତୁମେ, ସୁନ୍ଦର ସୁନ୍ଦର, ଡିରଲା, ଭଗ୍ବତୀ, ପ୍ରତିମା ଗଢ଼ୁନ ?

ଯୁବକ ମୋତେ ଅନାଇ ଏକ ଦୀର୍ଘଶ୍ୱାସ ନେଲା, ମହାରାଜାଙ୍କର ମୁଖ ମଣ୍ଡଳକୁ ଟିକେ ଅନାଇଲା, ଆଉ କହିଲା "ବାବୁ ତୁଇ ମୋର ଜିନିଷ କିଣ୍ତେ ନାଇ, ମୋର ବାପ୍ ଅଜାର ଏଇ କାମ୍, ଦେବୀ ଦେବତା, ମହାରାଣୀର କେତେ ପ୍ରତିମା ତିଆରି କରି ସେମାନେ । ତାଙ୍କୁ ତ ଦେଶରୁ ତଡ଼ିଲ, ଆଖି ତାଡ଼ି ନେଲ, ଆଉ ତା ପୁଅ ଗଢ଼ିବ କିସ, ତମ ଦରକାର, ତମ ଚାହିଁ ଦରବ ସିନା ?"

ପ୍ରଭାତର ପ୍ରଥମ କିରଣ ମହାରାଜାଙ୍କର ପୂର୍ଣ୍ଣ ଅବୟବରେ ପ୍ରତିଫଳିତ ହୋଇ ଶୀତର ସକାଳକୁ ଆଉଟିକିଏ ଆରାମ ଭରି ଦେଲା । ସ୍ୱାଭାବିକ ଭାବରେ ପ୍ରାତଃ ଭ୍ରମଣରେ, ସହର ପ୍ରଦକ୍ଷୀଣ କରୁଥିବା ଏଇ ଗଳ୍ପକାର ନିଜର କଳ୍ପନାର ବାଡ଼ିରେ ଆଙ୍କୁଶ ଦେଇ ଦୂର ଆକାଶିଆ ଚରିତ୍ର ଫୁଲ କେଇଟି ଗୋଟାଉଥିବା ବେଳେ, ଏଇ ଯୁବକଟି ଅଯାଚିତ ଭାବରେ, ସମ୍ମୁଖରେ ଥୋଇ ଦେଲା, ସୌରଭ-ପୂର୍ଣ୍ଣ ଶତଦଳ ପଦ୍ମଙ୍କର ପାଛିଆଟିଏ । ଆଜି ପାଠକଙ୍କୁ ପଥୁରିଆର ସେଇ ପ୍ରାଣମୟ ଚରିତ୍ରଙ୍କୁ ଅକ୍ଷର ପଞ୍ଜୁରୀରେ ଆବଦ୍ଧ କରି, ଉପହାର ଦେଉଛି ।

ଯୁବକଟି କହୁଥିଲା ତା'ର ପୂର୍ବଜଙ୍କର ଇତିହାସ ।

ବହୁଦିନ ତଳର କଥା । ଖିଚିଙ୍ଗ୍‌ର ପ୍ରସିଦ୍ଧ ମନ୍ଦିର ରାଜାଙ୍କ ଆଜ୍ଞାରେ ସମ୍ପୂର୍ଣ୍ଣ ହୋଇଥାଏ । ବିଧିବଦ୍ଧ ବିଗ୍ରହ ସ୍ଥାପନ ପୂର୍ବରୁ ମହାରାଜା, ମୁଖ୍ୟ ମହାରଣାଙ୍କ ଆମନ୍ତ୍ରଣରେ ନିର୍ମାଣ କାର୍ଯ୍ୟ ତଦାରଖ ପାଇଁ ଆସିଥାଆନ୍ତି । ସାଙ୍ଗରେ ଥାଆନ୍ତି ତାଙ୍କର ଅପୂର୍ବ ସୁନ୍ଦରୀ ଏକ ମାତ୍ର କନ୍ୟା । ନାଟ୍ୟ ମନ୍ଦିର ମୁଖଶାଳାର ପ୍ରତିମା-ମାନ ଦର୍ଶନ କରି, ମହାରାଜା ବିସ୍ମୟାଭିଭୂତ ହୋଇଗଲେ । ଅତ୍ୟନ୍ତ ପ୍ରୀତ ହୋଇ ମହାରଣାଙ୍କୁ ନିକଟକୁ ଡ଼ାକି, ଆପଣା ଗଳାର ମୁକ୍ତାହାର, ଦୁର୍ଲଭ ମଣିକାଞ୍ଚନ ଶୋଭିତ ଉତ୍ତରୀୟ, ଉତାରି ମହାରଣାଙ୍କ ଗଳାରେ ଲମ୍ବାଇ ଦେଲେ । ଭାବ ବିହ୍ୱଳ, କଳାପ୍ରେମୀ ମହାରାଜା କହିଲେ ଶିଳ୍ପୀ ! ଧନ୍ୟ ତୁମରି କାରୁକାର୍ଯ୍ୟ ! ମାନବର ସୌନ୍ଦର୍ଯ୍ୟ ବୋଧର ସର୍ବଶ୍ରେଷ୍ଠ ସନ୍ତକ ଏଇ ଶିଳାବକ୍ଷରେ ଖୋଦିତ, ନୃତ୍ୟାଙ୍ଗନା ଅପସରୀମାନଙ୍କର ପ୍ରତିମା ଦର୍ଶନ କଲେ ମନେହୁଏ, ବିଶ୍ୱର ସର୍ବଶ୍ରେଷ୍ଠ ସମ୍ଭାବ୍ୟ ସୌନ୍ଦର୍ଯ୍ୟ ଏଇଠି ହିଁ ସମ୍ପୂର୍ଣ୍ଣ । ଅତୁଳନୀୟ କାରୁକାର୍ଯ୍ୟ, ଧନ୍ୟ ତୁମରି ଦୃଷ୍ଟି, ଧନ୍ୟ ତୁମରି କଳ୍ପନା ।'

ପ୍ରତ୍ୟେକ ପ୍ରତିମାକୁ ତନ୍ନ ତନ୍ନ ପ୍ରଦକ୍ଷୀଣ କରି, ରାଜକୁମାରୀ କିନ୍ତୁ ରାଜାଙ୍କର ଭାବ ବିହ୍ୱଳତାକୁ ପସନ୍ଦ କରୁ ନ ଥିଲେ । ସେ ମଝିରେ ବାଧାଦେଇ କହିଲେ 'ମହାରାଜା ! ଏହା କଣ ନିଃସନ୍ଦେହରେ କହିହବ ଯେ, ଏହି ପ୍ରତିମାମାନେ, ବିଶ୍ୱର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟର ପ୍ରତିରୂପ । ହୁଏତ ଏଇ ସଂସାରରେ ଏଭଳି ବି ସୁନ୍ଦରୀ ଅଛନ୍ତି ଯାହାଙ୍କୁ ଏହି ଶିଳ୍ପୀ ଏଠି ପ୍ରତିନିଧିତ କରିନାହାନ୍ତି । ଅବା କାରୁକାର୍ଯ୍ୟ ସୁନ୍ଦର, ଶିଳ୍ପୀ ଶିଳା ବକ୍ଷରେ ସୌନ୍ଦର୍ଯ୍ୟ ଅବତରଣ କରିବାରେ ସକ୍ଷମ, ତଥାପି

ଶିଳ୍ପୀଙ୍କ ଦୃଷ୍ଟିରେ ଅନେକ ସୌନ୍ଦର୍ଯ୍ୟ ଏଯାଏଁ ଅସ୍ପୃଷ୍ଟ' । ମହାରାଜା କିଞ୍ଚିତ୍ ବିଚଳିତ ହୋଇ ରାଜକୁମାରୀଙ୍କର ପ୍ରତିବାଦ ଶୁଣିଲେ ।

ରାଜକୁମାରୀ ଥିଲେ ଅତ୍ୟନ୍ତ ଅହଂକାରୀ । ତାଙ୍କର ଗୋଟିଏ ଧାରଣା ଥିଲା ସେ ହେଉଛନ୍ତି ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀ । ତେଣୁ ଆଉ କାହାକୁ ଏଭଳି କି କାଳ୍ପନିକ ଅପସରୀଙ୍କର ପ୍ରତିମାକୁ ମଧ୍ୟ ତାଙ୍କଠୁଁ ବଳି ସୁନ୍ଦରୀ କହିବା ପାଇଁ ସେ କୁଂଠିତା । ଅଭିମାନୀ ରାଜକୁମାରୀଙ୍କର ରାଜାଙ୍କର ଉପରେ ଥିଲା ଅଖଣ୍ଡ ପ୍ରଭାବ । ରାଜକୁମାରୀ ଚାହୁଁଥିଲେ ଶିଳ୍ପୀ ତାଙ୍କର ଏକ ପ୍ରତିମା ପ୍ରସ୍ତୁତ କରନ୍ତୁ, ଯାହାକି, ବିଶ୍ୱର ସର୍ବଶ୍ରେଷ୍ଠ ପ୍ରତିମା ହେବ ।

ଅନିଚ୍ଛା ସତ୍ତ୍ୱେ ତହିଁ ଆରଦିନ ମୁଖ୍ୟ ମହାରଣାଙ୍କୁ ରାଜ ଦରବାରକୁ ଡକାଇ ମହାରାଜା ଆଦେଶ ଦେବାଭଳି କହିଲେ 'ଶିଳ୍ପୀ, କଳ୍ପନା କଳାକୁଶଳ ଆମ୍ଭେ ଦେଖିଲୁ, ବର୍ତ୍ତମାନ ଆମର ବିଚାର ହେଉଛି, ଶିଳ୍ପୀ ରାଜ ଦରବାରର ଉପସ୍ଥିତ ଯୁବକ ଯୁବତୀ ମଧ୍ୟରୁ ଯାହାକୁ ସବୁଠୁଁ ସୁନ୍ଦର ମନେ କରୁଛନ୍ତି ତାହାଙ୍କ ଏକ ନିଖୁଣ ପ୍ରତିମା ପ୍ରସ୍ତୁତ କରନ୍ତୁ, ଯାହାକି ମନ୍ଦିରର ମୁଖ୍ୟ ଆକର୍ଷଣ ହେବ ।'

ମହାରଣା, ହତବମ୍ବ ହୋଇ ମହାରାଜାଙ୍କୁ କିଛିକ୍ଷଣ ଅନାଇ ରହିଲେ, ତାପରେ କହିଲେ 'ମହାରାଜା ! ମୁଁ ଶିଳ୍ପୀ, ଦେବ ଦେବୀ ଅପ୍ସରାଙ୍କର ପ୍ରତିମା ଗଢିବା ମୋର ଧର୍ମ, ଜୀବନ୍ତ ମାନବର ପ୍ରତିମା ପ୍ରତିଷ୍ଠା ଧର୍ମବିରୁଦ୍ଧ । ପୁନଶ୍ଚ ମୋର ଚକ୍ଷୁରେ ରାଜ ଦରବାରର କୌଣସି ଯୁବକ ଯୁବତୀଙ୍କ ମଧ୍ୟରେ ଶିଳାବଦ୍ଧଯୋଗ୍ୟ ଟିକିଏ ହେଁ ସୌନ୍ଦର୍ଯ୍ୟ ଦୃଶ୍ୟମାନ ହେଉନାହିଁ, କ୍ଷମା କରିବେ ମହାରାଜା ! ମୁଁ ନାଚାର । '

ଶିଳ୍ପୀଙ୍କର ଉତ୍ତର ଶୁଣି ସ୍ୱାଭିମାନୀ ଅହଂକାରୀ ରାଜକୁମାରୀ କହିଲେ "ମହାରାଜା, ଭଗବାନ ଶିଳ୍ପୀଙ୍କୁ ଚକ୍ଷୁ ଦେଇଛନ୍ତି ସୌନ୍ଦର୍ଯ୍ୟ ସଂଦର୍ଶନ ପାଇଁ, ଆମଠି ଯଦି ଶିଳ୍ପୀ ସୌନ୍ଦର୍ଯ୍ୟ ଦେଖି ପାରୁନାହାନ୍ତି, ସେ ବରଂ ଚକ୍ଷୁହୀନ ହେବା ଉଚିତ । ମୋର ମତରେ ଶିଳ୍ପୀଙ୍କର ଏଭଳି ଅସଦ୍ବ୍ୟବହାର ଏକମାତ୍ର ଶାସ୍ତି ଶିଳ୍ପୀଙ୍କ ଦୃଷ୍ଟିହରଣ ।'

ମହାରାଜା ରାଜକୁମାରୀଙ୍କର ଇଚ୍ଛାର ବିରୋଧ କରିନଥିଲେ ଏବଂ ରାଜକୁମାରୀଙ୍କ ନିର୍ଦ୍ଦେଶରେ ହିଁ ଶିଳ୍ପୀଙ୍କର ଚକ୍ଷୁ ଅରକ୍ଷକ୍ଷୀର ଦ୍ୱାରା ନଷ୍ଟ କରାହେଲା ।

କେବଳ ସେତିକି ନୁହେଁ ରାଜକୁମାରୀ ଶିଳ୍ପୀଙ୍କୁ ଦେଶାନ୍ତର ଆଦେଶ ଦେଲେ ଏବଂ ଅନ୍ଧ ଶିଳ୍ପୀ ସେଇ ରାଜ୍ୟ ପରିତ୍ୟାଗ କରିଥିଲେ ।

ଯୁବକ ପଥୁରିଆର କାହାଣୀ କିନ୍ତୁ ଏଇଠି ସମାପ୍ତି ହେଲନାହିଁ, ଯୁବକ ପୁଣି କହି ଚାଲିଲ ।

ଶିଳ୍ପୀଙ୍କର ଏତାଦୃଶ ଶାସ୍ତିପରେ ରାଜାଙ୍କର ଅନୁଗତ ସୈନ୍ୟ ଶିବିରରେ ବିଦ୍ରୋହ ଉପଷମ ହେଲ । ବିଦ୍ରୋହ ନେତୃତ୍ୱ ନେଇଥିଲେ ମହାରାଜାଙ୍କର ଦୁର୍ଦ୍ଦାନ୍ତ କୁତ୍ସିତ ସେନାପତି । ସେ ଅନାୟସରେ ମହାରାଜାଙ୍କୁ ବନ୍ଦୀ କରି ରାଜକୁମାରୀଙ୍କୁ ବିବାହ ଆୟୋଜନ କଲେ ।

ରାଜକୁମାରୀ ଏସବୁ ଅଘଟଣ ପାଇଁ ମୋଟେ ହିଁ ପ୍ରସ୍ତୁତ ନ ଥିଲେ । ବିଶେଷତଃ କୁତ୍ସିତକାୟ ସେନାପତିର ଧର୍ମପତ୍ନୀ ହେବା ତାଙ୍କର ଅଭିମାନ ପାଇଁ ଥିଲ ଏକ ପ୍ରଚଣ୍ଡ ଆଘାତ ।

ରାଜକୁମାରୀ ଏହି ଅପମାନରୁ ରକ୍ଷାପାଇଁ ଆପଣା ଶରୀରକୁ ବିବର୍ଣ୍ଣ କରି ଛଦ୍ମବେଶରେ ଆପଣା ସହଚରୀମାନଙ୍କର ସହାୟତାରେ ଏକାକୀ ସେଇ ଦେଶ ପରିତ୍ୟାଗ କରିଥିଲେ । ନିଜକୁ ଏକ ନିଃସ୍ୱ ଭିକ୍ଷାର୍ଥିନୀ ଭବରେ ସଜାଇ ସେ ଦେଶେ ଦେଶେ ଗୋପନରେ ଜିବୀକା ନିର୍ବାହ କରିବାକୁ ଲଗିଲେ ।

ଘଟଣା ଚକ୍ରରେ ରାଜକୁମାରୀ ଏଭଳି ନିରାଶ୍ରୟା ହୋଇ ଭିକ୍ଷାର୍ଜନ ବେଳେ ସୁଦୂର ବିଦେଶରେ, ପହଞ୍ଚିଲେ ଏକ ସମୃଦ୍ଧ ନଗରରେ । ସେଇ ନଗର ଉପକଣ୍ଠରେ ସେ ଦେଖିଲେ ଏକ ନିରାଶ୍ରୟ ଅନ୍ଧ ବୃଦ୍ଧ ଯିଏକି, ଆପଣା ହାତରେ ତିଆରି କିଛି ବାସନ ବିକ୍ରୀ କରୁଥିଲେ ଏବଂ ନଗର ଉପକଣ୍ଠର ଏକ କୁଟୀରରେ ରହୁଥିଲେ । ରାଜକୁମାରୀ ଚିହ୍ନିଲେ ଶିଳ୍ପୀଙ୍କୁ । ଚକ୍ଷୁହରା ଶିଳ୍ପୀ ଏବେ ମଧ୍ୟ ନିହାଣ ମୂନରେ କର୍ମଚଞ୍ଚଳ । କିନ୍ତୁ ସେ ଆଉ ପ୍ରତିମା ଗଢିପାରୁ ନ ଥିଲେ, କେବଳ ତିଆରି କରୁଥିଲେ ବାସନ । ଏକଦା ଖିଚିଙ୍ଗ ଦରବାରର ରାଜ-ଶିଳ୍ପୀ, ଏଇନା କାଳାତିପାତ କରୁଥିଲେ ଅତ୍ୟନ୍ତ ଦାରିଦ୍ର୍ୟରେ ।

ରାଜକୁମାରୀ ଶିଳ୍ପୀଙ୍କର ଏହି ଅବସ୍ଥା ପ୍ରତ୍ୟକ୍ଷ କରି, ପଶ୍ଚାତାପରେ ମର୍ମାହତ ହୋଇଥିଲେ ଏବଂ ସ୍ୱଇଚ୍ଛାରେ ବାଛିନେଲେ ପ୍ରାୟଶ୍ଚିତର ପନ୍ଥା । ନିଜେ ନିରାଶ୍ରୟା ଭିକ୍ଷାର୍ଥିନୀ ଭବରେ ବୃଦ୍ଧଙ୍କର ଆଶ୍ରୟ ଭିକ୍ଷାକଲେ ଏବଂ ବୃଦ୍ଧ ଶିଳ୍ପୀ ରାଜକୁମାରୀଙ୍କୁ ଆପଣା କୁଟୀରରେ ରହି ଭିକ୍ଷାର୍ଜନ ପାଇଁ ଅନୁମତି ଦେଇଥିଲେ ।

ରାଜକୁମାରୀ ସର୍ବାନ୍ତକରଣରେ ବୃଦ୍ଧଙ୍କର ସେବାରେ ନିଜକୁ ସମର୍ପଣ କରିଦେଲେ । ରାଜକୁମାରୀଙ୍କର ସେବା ଯତ୍ନରେ ଅନ୍ଧ ଶିଳ୍ପୀ ସମ୍ପୂର୍ଣ୍ଣ ବିମୋହିତ ହୋଇଗଲେ ଏବଂ ରାଜକୁମାରୀଙ୍କ ଯୋଗୁଁ ହିଁ ସେ ଅନ୍ଧ ଜୀବନର କୌଣସି ଅସୁବିଧା ଅନୁଭବ କରିପାରି ନଥିଲେ ।

ଦିନେ ଦିନେ, ରାଜକୁମାରୀ ଜିଜ୍ଞାସା କରନ୍ତି ଶିଳ୍ପୀଙ୍କର ଅତୀତର କାହାଣୀ । ଶିଳ୍ପୀ ଅତି ଆବେଗରେ କହି ଯାଆନ୍ତି ତାଙ୍କର ଶିଳ୍ପୀ ଜୀବନର ମାର୍ମିକ କାହାଣୀ । ଅଶ୍ରୁପ୍ଲୁତା ରାଜକୁମାରୀ ଅନେକ ଥର ଶୁଣନ୍ତି ଶିଳ୍ପୀଙ୍କର ମୁଖରେ, ଏକ ଅହଂକାରୀ ରାଜକନ୍ୟାର ବର୍ବର ବଡ଼ିମାର ଇତିହାସ । ଶିଳ୍ପୀଙ୍କର ମନରେ କିନ୍ତୁ ମହାରାଜା ରାଜକୁମାରୀ ବା ରାଜାଜ୍ଞା ପ୍ରତି କେବେ ହେଁ ଘୃଣାଭାବର ଟିକିଏ ଆଭାସ୍ ପାଆନ୍ତି ନାହିଁ ।

ଏକଦା ଶିଳ୍ପୀ ଅତ୍ୟନ୍ତ ଅସୁସ୍ଥ ହୋଇ ପଡ଼ିଲେ । ରାଜକୁମାରୀ ଭିକ୍ଷାର୍ଜିତ ଅନ୍ନରେ ତଥା ଅତ୍ୟନ୍ତ ଆତ୍ମୀୟତାରେ ବୃଦ୍ଧଙ୍କର ଅହୋରାତ୍ର ସେବା କରିବାରେ ନିମଜ୍ଜିଗଲେ । ଶିଳ୍ପୀ କିଞ୍ଚିତ ସୁସ୍ଥ ହେବାକ୍ଷଣି ରାଜକୁମାରୀ ଦିନେ ତାଙ୍କୁ କହିଲେ, ମହାଶୟ ! ଆପଣଙ୍କର ଏଇ ଦୁର୍ଦ୍ଦଶାର ଏକମାତ୍ର କାରଣ ସେଇ ପାପିୟସୀ ଅହଂକାରୀ ରାଜକୁମାରୀ, ତାକୁ ଜୀବନ୍ତ ଜ୍ୱଳନ୍ତ ଅଗ୍ନିକୁଣ୍ଡକୁ ନିକ୍ଷେପ କରିବା ହିଁ ଥିଲା ମହାରାଜଙ୍କର କର୍ତ୍ତବ୍ୟ......

ଅନ୍ଧ ଶିଳ୍ପୀ କିନ୍ତୁ ରାଜକୁମାରୀଙ୍କୁ ବାରଣ କରି କହିଲେ, ନା ମାଆ ଦୋଷ କ'ଣ ରାଜକୁମାରୀର । ଦୋଷତ ହେଉଛି ତା'ର ଅହଂକାରର । ପ୍ରତ୍ୟେକ ପିତାମାତା ଜଣେ ଜଣେ ଶିଳ୍ପୀ । ଶିଳ୍ପୀ ନିହାଣ ମୂନରେ ଅହଂକାର ଶିଳା ଦେହରୁ ସସ୍ତର ପ୍ରସ୍ତର ଉତାରି ଦିଏ ଆଭରଣ । ସେଇ ଅରୂପ ଅସୁନ୍ଦର ଶିଳା ହିଁ ରୂପାନ୍ତରିତ ହୁଏ ଦିବ୍ୟ ସୁନ୍ଦର ବରେଣ୍ୟ ପ୍ରତିମାରେ । ତେଣୁ ରାଜକୁମାରୀ

ଅହଂକାରର ପାହାଡ ଭଳି, ଅଭିମାନୀ ହେବାରେ ଦୋଷ ହେଉଛି ଗଢାଙ୍କର ପ୍ରତିପାଳନ ଓ ଶିକ୍ଷାର ବ୍ୟବସ୍ଥା ।

ଆଉ ଏକ କଥା ମୋ ମନକୁ ଆସୁଛି ମାଆ, ସତରେ ଗଜକୁମାରୀଙ୍କର ସୌନ୍ଦର୍ଯ୍ୟବୋଧ କ'ଣ ଠିକ୍ ନୁହେଁ । ଭଗବାନ ମୋତେ ଚକ୍ଷୁସ୍ନାନ କରି ବିପୁଳ ବିଶ୍ୱର ବିସ୍ମୟଭରା ସୌନ୍ଦର୍ଯ୍ୟ ଉପଗ୍ରେ ସହ ଜନ୍ମ ଦେଲେ । କିନ୍ତୁ ଶିଳ୍ପୀ ଭବରେ ମୁଁ ସୌନ୍ଦର୍ଯ୍ୟ ଖୋଜିଲି କଳ୍ପନାର ସାମ୍ରାଜ୍ୟରେ, ଆପଣାର ଅହଂକାରର ଇଲାକାରେ । ଏବେ ତ ମନେ ହେଉଛି ରାଜକୁମାରୀ ଉଚିତ ବିଗ୍ରେ ହିଁ କରିଥିଲେ ।

ରାଜକୁମାରୀ ବିସ୍ମୟାଭିଭୂତା ହୋଇ ପ୍ରଶ୍ନ କଲେ, 'ସେଇ ପାପିୟସୀର ବର୍ବରତାକୁ ଆପଣ ପୁଣି ଯଥାର୍ଥ କହୁଛନ୍ତି କାହିଁକି ?

ଅନ୍ଧ ଶିଳ୍ପୀ ଭାଜକୁମାରୀଙ୍କୁ ନିକଟକୁ ଡ଼ାକି ତାଙ୍କୁ ଘେନିଯିବାକୁ କହିଲେ ଏକ ପାହାଡ଼ ନିକଟକୁ । ସଙ୍ଗରେ ନେଇଗଲେ ନିହାଣ । ପାହାଡ଼ ନିକଟରେ ଅତି ଆତ୍ମୀୟ ଆବେଗରେ, ରାଜକୁମାରୀଙ୍କ କେଶ, ନାଶାଗ୍ର, ଚକ୍ଷୁ ଆଦି ସ୍ପର୍ଶ କରି କହିଲେ 'ମାଆଲେ ! ଯେତେଦିନ ପର୍ଯ୍ୟନ୍ତ ସଂସାର ଦୃଶ୍ୟମାନ ହେଉଥିଲା, କୌଣସି ମାନବ ଗାତ୍ରରେ ଅମୃତମୟ ସ୍ନେହର ସୌନ୍ଦର୍ଯ୍ୟ ମୁଁ ଉପଲବ୍ଧି କରିନଥିଲି । ଆଜି ତୋର ନିସ୍ୱାର୍ଥପର ସେବା, ଆଉ ମମତାରେ ମୁଁ ଦେଖିପାରୁଛି ଏକ ଅପୂର୍ବ ରୂପ ଲବଣ୍ୟ । ମୁଁ ତାହାକୁ ହିଁ ଆଜି ସାକାର କରିବି ଏହି ନିହାଣରେ । ଏଇ ଅହଂକାରୀ ଶିଳା ବକ୍ଷରୁ ଉତାରି ଆଣିବି ତୋର ପ୍ରତିମା । ତୁ କେବଳ ମୋତେ ସାହାଯ୍ୟ କର, ମୋର ସନ୍ନିକଟରେ ଉପସ୍ଥିତ ରହ, ତୋତେ ସ୍ପର୍ଶ କରି ଅନ୍ଧକାରରେ ତିଆରି କରିବି ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀର ପ୍ରତିଛବି, ତୋର ପ୍ରତିମା, ମାଆ ତୋ'ର ।

ରାଜକୁମାରୀ ଅଶ୍ରୁଳ ଆବେଗରେ ବୃଦ୍ଧଙ୍କର ପାଦତଳେ ନଇଁପଡ଼ି କଇଁ କଇଁ କାନ୍ଦିଥିଲେ ଏବଂ ମାତ୍ର କେଇଦିନ ମଧ୍ୟରେ ଶିଳ୍ପୀ ଅହୋରାତ୍ର ଉଜାଗର ରହି ଗଢ଼ିଦେଲେ ରାଜକୁମାରୀଙ୍କର ଅବିକଳ ପ୍ରତିମାଟିଏ ।

ଠିକ୍ ଏ ସମୟରେ କିନ୍ତୁ ଅନେକ କିଛି ଘଟଣା ଘଟୁଥାଏ ରାଜକୁମାରୀଙ୍କର ନିଜ ରାଜ୍ୟରେ । ଅନୁଗତ ସୈନ୍ୟମାନେ ମହାରାଜାଙ୍କୁ କାରାମୁକ୍ତ କରି

ସେନାପତିଙ୍କ ଶିରଚ୍ଛେଦ କରି ସାରିଥିଲେ । ମହାରାଜା ଗାଦିସୀନ ହେବାକ୍ଷଣି ରାଜକୁମାରୀଙ୍କର ଅନୁସନ୍ଧାନରେ ସୈନ୍ୟ ପ୍ରେରଣ କଲେ ଦେଶଦେଶାନ୍ତର ।

ନଗରୀରେ ଭିକ୍ଷାର୍ଜନ ବେଳେ ରାଜାଙ୍କର ଅନୁଚରମାନେ ରାଜକୁମାରୀଙ୍କୁ ଚିହ୍ନି ପାରିଥିଲେ ଏବଂ ତାଙ୍କୁ ଅତି ଆଡ଼ମ୍ବରରେ ସ୍ୱରାଜ୍ୟକୁ ଘେନି ଯାଇଥିଲେ ।

ରାଜକୁମାରୀଙ୍କ ଠାରୁ ଶିଳ୍ପୀଙ୍କର ଦୁର୍ଦ୍ଦଶାର କାହାଣୀ ଶୁଣି ଅନୁତପ୍ତ ମହାରାଜା ସଙ୍ଗେ ସଙ୍ଗେ ଶିଳ୍ପୀଙ୍କୁ ରାଜ ଦରବାରରେ ଉପସ୍ଥାପନ ପାଇଁ ଆଜ୍ଞା-ଦେଲେ ।

ଦେଶାନ୍ତରିତ ଶିଳ୍ପୀଙ୍କୁ ରାଜ ଦରବାରରେ ହାଜର କରାହେଲା । ଏଥର କିନ୍ତୁ ପ୍ରବୁଦ୍ଧ ଶିଳ୍ପୀ ପ୍ରସ୍ତୁତ ହୋଇଯାଇଥିଲେ ଅନ୍ତିମ ପରିଣାମ ପାଇଁ । ଦରବାରରେ ଉପସ୍ଥିତ ହେବାକ୍ଷଣି ସେ ମହାରାଜା ଏବଂ ରାଜକୁମାରୀଙ୍କ ଉଦ୍ଦେଶ୍ୟରେ କହିଲେ, 'ମହାରାଜ, ଏକଦା ବିବେକର ବିଗ୍ରହରେ ମୋତେ ଦୃଷ୍ଟିହୀନ କଲେ । ଏଇ ବୃଦ୍ଧ-ବୟସରେ ଶିରଚ୍ଛେଦ ଆଦେଶ ପାଇଁ ମୁଁ ପ୍ରସ୍ତୁତ । ତେବେ, ଗତ ଦରବାରରେ ରାଜା ଯେଉଁ ଆଦେଶ ଦେଇଥିଲେ ତାହା ମୁଁ ପୂର୍ଣ୍ଣ କରିଛି । ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀ, ଯିଏ ବର୍ତ୍ତମାନ ମଧ୍ୟ ଜିବୀତା, ତା'ର ପ୍ରତିମା ମୁଁ ପ୍ରସ୍ତୁତ କରିଛି ମହାରାଜ !'

ରାଜକୁମାରୀ କହିଲେ 'ଶିଳ୍ପୀ, ତମେ ଯେଉଁ ପ୍ରତିମା ପ୍ରସ୍ତୁତ କରିଛ, ତାହା ଆମେ ଦେଖିବା ପାଇଁ ଆଗ୍ରହୀ କିନ୍ତୁ ତୁମେ ନିଜେ ସ୍ୱଚକ୍ଷୁରେ ଅବଲୋକନ ନ କରି, ତାହାର ଶ୍ରେଷ୍ଠତ୍ୱ କିଭଳି, ପ୍ରତିପାଦନ କରି ପାରିବ ।

କିନ୍ତୁ ରାଜକୁମାରୀ, ରାଜା ଆଜ୍ଞାରେ ମୁଁ ଚକ୍ଷୁହୀନ ଏବଂ ସେଇ ପ୍ରତିମା ଯେ ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀର ଏହା ମୁଁ ହୃଦୟରେ ଅନୁଭବ କରୁଛି । ସୌନ୍ଦର୍ଯ୍ୟବୋଧ ଅନୁଭବର କଥା, ସେଇ ଶକ୍ତି ଚକ୍ଷୁହୀନର ଏ ଯାଏଁ ଅକ୍ଷତ ।

ରାଜକୁମାରୀ ତତ୍‌କ୍ଷଣାତ୍ ରାଜବୈଦ୍ୟମାନଙ୍କୁ ପରାମର୍ଶ କଲେ ଯେ କୌଣସି ଉପାୟରେ ଶିଳ୍ପୀଙ୍କର ଦୃଷ୍ଟିଲାଭର ଉପଚାର ପାଇଁ । ରାଜବୈଦ୍ୟ କହିଲେ 'ରାଜକୁମାରୀ, ଏଥିପାଇଁ ମାତ୍ର ଗୋଟାଏ ଉପାୟ, କିନ୍ତୁ ଅତ୍ୟନ୍ତ କଠିନ ଉପଚାର । ଯଦି କିଏ, ଚକ୍ଷୁଷ୍ମାନ୍ ଆପଣା ଚକ୍ଷୁକୁ ସ୍ୱଇଚ୍ଛାରେ ସୂଚୀବିଦ୍ଧ କରି ସାତଦିନ ଯାଏ

ଅନ୍ଧ ଶିଳ୍ପୀର  ଚକ୍ଷୁକୁ ଆପଣା ଚକ୍ଷୁର ରକ୍ତ, ପ୍ରକ୍ଷାଳନ କରିପାରିବ, ତେବେ ହୁଏତ ଶିଳ୍ପୀ ପୁନର୍ବାର ଦୃଷ୍ଟି ଫେରି ପାଇବେ ।'

ରାଜକୁମାରୀ ସେକ୍ଷଣି, ରାଜବୈଦ୍ୟଙ୍କୁ ଆଦେଶ କଲେ ଆପଣାର ଚକ୍ଷୁଦ୍ୱୟକୁ ସୂଚୀ ବିଦ୍ଧ କରିବା ପାଇଁ । ସମସ୍ତଙ୍କ ବାରଣ ସତ୍ତ୍ୱେ ରାଜକୁମାରୀଙ୍କର ଆଦେଶ ହିଁ କାର୍ଯ୍ୟକାରୀ ହେଲା । ତାଙ୍କର ଅଜାଣତରେ ଶିଳ୍ପୀ ଚିକିତ୍ସିତ ହେଲେ, ରାଜକୁମାରୀଙ୍କର ଅଶ୍ରୁଶୋଣିତର ଉପଚାରରେ ।

ସପ୍ତମ ଦିବସରେ ଶିଳ୍ପୀ ସମ୍ପୂର୍ଣ୍ଣ ଦୃଷ୍ଟି ଫେରି ପାଇଥିଲେ ଏବଂ ଦେଶାନ୍ତରରୁ ସେଇ ପ୍ରତିମାଟିକୁ ଅଣାଇ କୃଷ୍ଣବସ୍ତ୍ରରେ ଆଚ୍ଛାଦିତ କରି ଉପସ୍ଥାପନ କଲେ ସିଂହାସନାସୀନ ମହାରାଜ ତଥା ରାଜକୁମାରୀଙ୍କର ସମ୍ମୁଖରେ ।

ରାଜକୁମାରୀ ସହଚରୀଙ୍କର ସାହଚର୍ଯ୍ୟରେ ମୂର୍ତ୍ତି ପ୍ରତିମା ନିକଟକୁ ଆସି ପ୍ରତିମାର କୃଷ୍ଣାଭରଣ ଅନ୍ତରିତ କରିବାକ୍ଷଣି ଚକ୍ଷୁଷ୍ମାନ୍ ଶିଳ୍ପୀ ପ୍ରତ୍ୟକ୍ଷ କରୁଥିଲେ ଅହଂକାରୀ ରାଜକୁମାରୀ ଏବଂ ତାଙ୍କର ଅବିକଳ ପ୍ରତିରୂପା ଶୈଳକନ୍ୟା ପ୍ରତିମା । ରାଜକୁମାରୀ ବିସ୍ମୟାଭିଭୂତ ଶିଳ୍ପୀଙ୍କର ପଦତଳେ ପ୍ରଣିପାତ କରି ଅଶ୍ରୁଳ ଆବେଗରେ କହିଲେ "ଶିଳ୍ପୀ ! ମୁଁ ହିଁ ସେଇ ଭିକ୍ଷାର୍ଥିନୀ, ମୁଁ ହିଁ ସେଇ ଅହଂକାରୀ ଅନ୍ଧଶୀଳା । ମୋତେ କ୍ଷମାକର ଶିଳ୍ପୀ ମୋତେ କ୍ଷମାକର ।'

ଦୁଇ ହାତରେ ଭୂମିଷ୍ଠା—ରାଜକୁମାରୀଙ୍କୁ ଉତ୍ତୋଳନ କରି ଶିଳ୍ପୀ ଏକ ଅଦ୍‌ଭୁତ ଆବେଗରେ ଆପଣା ବକ୍ଷକୁ ଚାପିଧରି ଚିତ୍କାର କଲେ 'ମୋତେ କ୍ଷମା କର ମାଆ, ମୋତେ କ୍ଷମାକର ।'

ଆଦିବାସୀ ଯୁବକ, କଥା ଶେଷ କଲେ, କୃତଜ୍ଞ କଥାକାର, ଚିକ୍‌କଣ ବାସନଟିକୁ ହସ୍ତଗତ କରି ପଇସା ବଢ଼ାଇ ଦେଲାପରେ, ଆଉ ତାଙ୍କୁ ସାମ୍ନା କରିବାକୁ ସକ୍ଷମ ନ ଥିଲା—ଦ୍ରୁତବେଗରେ ସର୍କିଟ୍ ହାଉସ୍ ମୁହାଁଇବା ବେଳେ, ପୁଣିଥରେ ଯୁବକର ପାଟି ଶୁଭିଲା 'ହେ ବାବୁ, ଏଟା'ର ଦାମ ପାଞ୍ଚଟଙ୍କା, ଶହେ ଟଙ୍କା ଦେଇଛ କେନ ?"



ତମାମ୍ ତିନିସନ ମରୁଡ଼ି ଯୋଗୁଁ ଗାଁର ଲୋକେ ବଡ ଦୁଃଖରେ ଥାଆନ୍ତି । ଜମିରୁ ଫସଲ ନପାଇ ଗାଁର ଅଧିକାଂଶ ଲୋକ ବଣ ଜଙ୍ଗଲରୁ ବଣକନ୍ଦା ଖୋଳି ଖାଉଥାନ୍ତି । କେବଳ ସୁଖରେ ଥାଆନ୍ତି ଗାଁଆର ସାହୁକାର ଚଉଧୁରୀ । ଅମାରରେ ତାଙ୍କର ଧନ ଧାନ ଭରିଥାଏ । ମେଘନାଦିଆ ପାଚେରୀ ଭିତରେ ଚଉଧୁରୀଙ୍କର କୋଠାଘର । ଗାଁଆ ଲୋକଙ୍କୁ ପାଖକୁ ପୂରନ୍ତି ନାହିଁ ।

ଗାଁଆ ଲୋକେ ବିକଳରେ ଅନାଇ ରହନ୍ତି ଆକାଶକୁ । ଅନେକ ପୂଜା ଅର୍ଚ୍ଚନା କଲେଣି କିନ୍ତୁ ଟୋପାଏ ବର୍ଷାନାହିଁ । ଶାଗ ମୁଠାଏ ବା ମାଟିକନ୍ଦା ପୁଞ୍ଜାଏ ପାଇଁ ଦୂର ଜଙ୍ଗଲକୁ ଯିବାକୁ ପଡୁଛି । ଏଇ ଦୁଃଖ ସାଙ୍ଗକୁ ପ୍ରବଳ ଖରା ଯେ, ଆକାଶରୁ ନିଆଁ ଖସୁଛି । ବୁଢାମାନେ କହୁଛନ୍ତି, ଏଇ ମହାକାଳରୁ କେହି ତରିବେ ନାହିଁ । ଜଣେ ଜଣେ ଆଶାବାଦୀ କହୁଛନ୍ତି, ଅକାଳ କଳିର ମଣିଷକୁ ପରଖୁଛି ।

ଏମିତି ଥରେ ଅକାଳ ପଡ଼ିଥିଲା, ଅନେକ ଦିନତଳେ, ଅଜା ପଣଅଜା ଅମଳରେ । ଅଧାରୁ ଅଧିକ ଖଟ ଗାଁଆରୁ ଉଠିଗଲା । ଦିନେ ଦିପହର ବେଳେ ଗାଁଆ ବରଗଛ ମୂଳରେ କାହିଁଆସି ଉଭାହେଲେ ମଉନୀ ବାବା । ହାତରେ ସୁନାର କମଣ୍ଡଳୁ, ମୁଣ୍ଡରେ ଜଟା । ଧ୍ୟାନରେ ବସିଥିଲେ ବାବା । ଗାଁଆ ଲୋକେ ଘେରିଗଲେ ନେହୁରା ହେଲେ । ହଜାରେ ବର୍ଷ ବୟସ କି ଆଉ ଅଧିକ ମଉନୀ ବାବା । ଲୋକଙ୍କର ଦୁଃଖ ଦେଖି ତରଳି ଗଲେ । ଆଖିରୁ ବହି ଆସିଲା ଧାର ଧାର ଲୁହ । ଆକାଶକୁ କ୍ରୁଦ୍ଧ ଆଖିରେ ଚାହିଁଲେ । କମଣ୍ଡଳରୁ କାଢିଲେ କେଇବୁନ୍ଦା ପାଣି ଆପଣା ମୁଠିରେ । ଆକାଶକୁ ଫିଙ୍ଗିଦେଲେ ଜଳ । ବଜ୍ରନିନାଦ କଣ୍ଠରେ ପଦୁଟିଏ ମାତ୍ର କହିଲେ " ବର୍ଷା ! " ।

ସଙ୍ଗେ ସଙ୍ଗେ ମେଦିନୀ କମ୍ପି ଉଠିଲା । ଚାରିଦିଗରୁ ଘୋଟି ଆସିଲା ମେଘ । ଘଡ଼ିକେ ପୁରିଗଲା ନଈନାଳ ପୋଖରୀ । ଲୋକେ ଲମ୍ବ ଲମ୍ବ ହୋଇ ପଡ଼ିଗଲେ ମଉନୀଙ୍କ ପାଦତଳେ ।

ବିସ୍ମୟାଭିଭୁତ ଗ୍ରାମବାସୀ ନିଶବ୍ଦରେ ଶୁଣୁଥିଲେ । ବୃଦ୍ଧ ଟିକିଏ ଅଟକିଗଲେ । ଏକା ସାଥୀରେ ଅନେକ ସ୍ୱର ଉଠିଗଲା । "ତାପରେ ? ତାପରେ ?" ।

ଗଳା ସଫାକରି ବୃଦ୍ଧ ପୁଣି ଆରମ୍ଭ କଲେ "ସେ କଣ ଆମଭଳି ଦେହଧାରୀ, ସେ ପରା ଅଜନ୍ମା, ଗାଁଆବାସୀ ହାତଯୋଡ଼ି ଉପରକୁ ଗ୍ୱହିଁଲା ବେଳକୁ, ମଉନୀ ବାବା ଉଭନ, ମହାଶୂନ୍ୟରେ ଆପଣାଛାଏଁ ଗ୍ୱଲିଗଲେ" ।

ବକ୍ତବ୍ୟ ଶେଷ ହେଲା । କିଏ କହିବ ଇଏ ସତ କି ମିଛ ? କଥା କହୁଥିଲେ ବରଗଛ ବା କହନ୍ତା । ବିଶ୍ୱାସ ,ଅବିଶ୍ୱାସରେ ବୁଢ଼ାମାନେ ଯୋଡ଼ ହାତରେ ପ୍ରଣାମ କଲେ, ଏଥର ବରବଛକୁ ।

ଏମିତି ଆଉକିଛି ଦିନ ଗ୍ୱଲିଗଲା । ଦୁଃଖ ବଢିଗଲା । ଗ୍ୱେରୀ ଡକାୟତି ମହାମାରୀ । ଜଙ୍ଗଲରେ ଲାଗିଲା ନିଆଁ । ଆଉ ଏକ ବିପଦ ଆସିଲା । ହିଂସ୍ରଜନ୍ତୁ ଅନ୍ଧାର ହେଉଁ ହେଉଁ ଉତୁରି ଆସିଲେ ତଳକୁ । ଗାଈଗୋରୁ, ଛେଳି ମେଣ୍ଢା ଓଟାରିନେଲେ ଗୁହାକୁ । ଏପରିକି ଗତି ବିକାଳରେ ଏକ ଦୁଇ ପାଇଁ ଦାଣ୍ଡକୁ ଭରସିଥିବା ଲୋକ ଆଉ ଫେରିଲେନି ଭିତରକୁ । ହାହାକାର ଘୋଟିଗଲା ।

ବୁଢ଼ାମାନେ କିନ୍ତୁ ଭରସା ଦେଉଥାଆନ୍ତି । "ଠହରି ଯାଅ, ଠାକୁର ଆସିବେ, କିଏ ଜାଣେ, କି ରୂପରେ ଆସିବେ ? କିନ୍ତୁ ନିଶ୍ଚୟ ଆସିବେ, ଆସିବେ ।"

ଦିନକର ଘଟଣା । ଗାଁଆକୁ ଲାଗି ପୁରୁଣା ପୋଖରୀଟିଏ । ପାଂଚଟାଏ ପିଲା ପଙ୍କ ଭିତରେ ଚେଙ୍ଗ ଧରୁଥିଲେ । ହଠାତ୍ ସେମାନେ ଦେଖିଲେ ପୋଖରୀ ହୁଡା ବରଗଛକୁ ଆଉଜି ଦାଢୀଆ ବାବାଜୀ ଜଣେ ବସିଛନ୍ତି । ନିକଟରେ ଅଷ୍ଟବକ୍ର ଯଷ୍ଟିଟିଏ ।

ନଙ୍ଗଳା ପିଲାସବୁ ପଙ୍କ ଭିତରୁ ଡେଇଁ ହୁଁ କିନା । ଦଉଡ଼ିଲେ ଗାଁଆ ଦାଣ୍ଡକୁ । ଗାଁର ଏମୁଣ୍ଡରୁ ସେମୁଣ୍ଡ ହୁରି ଛାଡ଼ିଲେ "ଠାକୁର ଆସିଛନ୍ତି ବାବା ଆସିଛନ୍ତି । ଦଉଡ଼ିଆସ ମହାପୁରୁଷ ମଉନୀ ବାବା, ! ଆଖିରେ ପଲକ ପଡୁନି, ଦୋହା ହଲୁନି । "

ଗାଁଆର ବୁଢା, ଯୁବକ ଯୁବତୀ, ସଭିଏଁ ଧାଇଁଲେ । ମାଆମାନେ ପିଲାଙ୍କୁ କାଖରେ ଜାକି ଧାଇଁଲେ ହୁଡାକୁ ।

ଦୀର୍ଘ ପଥ ଅତିକ୍ରମ କରି ଆସିଥିବା ବାବାଜୀ ଥିଲେ ଶାୟିତ ମୁଦ୍ରାରେ । ହଠାତ୍ ଚମକି ଶହ ଶହ ଲୋକ ତାଙ୍କୁ ଘେରି ଡିମା ଡିମା ଆଖିରେ ବିସ୍ମୟରେ ଅନାଉଁଥିବା ଦେଖି, ବାବାଜୀ କିଛି ବୁଝି ପାରିଲେନାହିଁ । ଭିଡ଼ମଧ୍ୟରୁ ବୃଦ୍ଧଜଣେ ଆଗକୁ ବାହାରି ହାତଯୋଡ଼ି କହିଲେ " ପ୍ରଭୁ ! କେତେକାଳକୁ ଆଉଥରେ ଉଭା ହେଲ ! ଆଉଥରୁଟିଏ ମନ୍ତ୍ରଦିଅ ପ୍ରଭୁ, ଆଉ ପଦୁଟିଏ ।"

ବୁଢ଼ାର ବିନୟ ବର ମାଗିବା କିନ୍ତୁ ଅନ୍ୟ ମାନଙ୍କୁ ପାଇଲାନାହିଁ । ପଦୁଟିଏ "ବର୍ଷା" କହି ବାବାଜୀ ଭଗନ ହେଲେ ଖାଲି ବର୍ଷାହେବ, ଆଉ ସବୁ ଦୁଃଖ ? ବୁଢ଼ା ମାଗୁନି ଆଉସବୁ । ଏଥର ଅଧର୍ଯ୍ୟରେ ସଭିଏଁ ଚିତ୍କାର କଲେ " ବର୍ଷାଦିଅ, ଧାନଦିଅ, ବାଘମାର, ଡକାୟତ ନିପାତ କର, ଚଉଧୁରୀଙ୍କୁ ସାବାଡକର ସବୁଦିଅ, ସବୁଦିଅ !"

ଏକେତ ଏଡ଼େ ବଡ ଭିଡ଼ ଦେଖି ବାବାଜୀ ତରକି ଯାଇଥିଲେ । ଏମିତି ହା ହୋଲ୍ଲାରେ ବିଚରା ପ୍ରମାଦ ଗଣି ଯଷ୍ଟିଧରି ଛିଡ଼ାହୋଇ ଉଲରେ ଉଲରେ ଖସିବାର ଉପାୟ ପାଞ୍ଚିଲେ । ଲୋକେ ମନେକରୁଥିଲେ ଯଷ୍ଟିମୂର୍ତ୍ତିରେ ବାବାଜୀ ଏଇନେ ଆକାଶକୁ ଆଦେଶ ଦେବେ । ବର୍ଷା ସାଙ୍ଗକୁ, ଧନ ଧାନ୍ୟ ସୁଖ ସଂପତ୍ତି ସବୁ ଅଜାଡ଼ି ପଡ଼ିବ । ଅବଶ୍ୟ ଚଉଧୁରୀ ମୁଣ୍ଡରେ ତହିଁରୁ କିଛି ପଡ଼ି, ଦହି ନିଗିଡ଼ି ପଡ଼ିବ ।

କିନ୍ତୁ ବାବାଜୀ ଏଥର ଛାନିଆ । ଥରେ ପିଲା-ଗ୍ରେର ସଂଦେହରେ ନିର୍ଘାତ୍ ଛେଚା ଖାଇଛନ୍ତି । ତା'ର ପୁନରାବୃତ୍ତି ଆଶଙ୍କାରେ ବିଚରା ତରବରରେ ରସ୍ତା- ଧରିଲେଣି, ଭିଡଡେଇଁ ।

ଲୋକେ ଭାବୁଥିଲେ ଟିକିଏ ଫରଗ୍ ଦେଖି ବାବାଜୀ ଆକାଶକୁ ଗ୍ରହିଁବେ । କିନ୍ତୁ ଯେତେବେଳେ ଦେଖିଲେ ଯେ ମୁହୁଁ ମୁହୁଁ ପଛକୁ ଗ୍ରହିଁ, ତତଲା ଧୂଳିରେ ବାବାଜୀ ଖାଲି ଆଗ ରସ୍ତାକୁ ଧାଉଁଛି, ଥୋକାଏ ଟୋକା କହିଲେ "ହେଇବେ ବାଆଜୀ, ପଳଉଛି ତାଙ୍କୁ ଧର ।"

ଟୋକାଏ ବାବାଜୀ ପଛରେ ଗୋଡାଇଲେ । ତତଲ ଧୂଳିଲେ ବାବାଜୀ ବେଶୀ ବାଟ ଯାଇପାରି ନଥିଲେ । ଗାଁଆ ମୁଣ୍ଡରେ ମାଧ ଗଉଡ଼ର ଭଗ୍ନ ପିଣ୍ଡାରେ ଧେତଡ଼ି ବୁଢୀ ମେଣ୍ଢୀଟିଏ ନିସ୍ତେଜରେ ଶୋଇଥିଲା । ହଠାତ୍ ଏଇ ପାଟି-ଗୋଳରେ ଚମକି କୁଦି ଆସି ଦୈବାତ୍ ବାବାଜୀ ଗୋଡ଼ରେ ଛନ୍ଦି ହୋଇଗଲା । ବାବାଜୀ ତଳେ ପଡ଼ିଗଲେ । ଉଠିଲା ବେଳକୁ ଟୋକାଏ ଜମି ଗଲେଣି । ବାବାଜୀ ଆତଙ୍କ ଏବଂ କାତର ଶବ୍ଦଟିଏ ଟିକିଏ ଉଚ୍ଚକଣ୍ଠରେ ଆପଣାକୁ ଆଶ୍ୱାସନା ଦେବା ଭଳି କହିଲେ "ମେଣ୍ଢା ।"

ମାଡ଼ି ଆସୁଥିବା ଜନତା ସ୍ଥିରହୋଇଗଲେ ମଉନୀ ବାବାଙ୍କର ମଉନ ଭଙ୍ଗରେ । ସମସ୍ତେ ଲମ୍ବହୋଇ ପଡ଼ିଗଲେ ତତଲ ବାଲିରେ । ଏଇ ସୁଯୋଗ ଦେଖି ବାବାଜୀ ଫିଟିଯାଇଥିବା କୌପୀନକୁ କାନ୍ଧରେ ଓହ୍ଲାଇ ଦ୍ରୁତବେଗରେ ଯେ ପଳାୟତି ସ ଜୀବତି ରତିରେ, ଖେପି ଯାଇଥିଲେ ଦୂର ଜଙ୍ଗଲ ଆଡ଼କୁ ।

ହତାଶ ଗ୍ରାମବାସୀ ଆପଣା ଆପଣା କପାଳରେ ହାତମାରି ରହିଲେ । ଟୋକାଏ କେବଳ ବୁଢାଙ୍କୁ ଶୁଣାଇ ଶୁଣାଇ କହୁଥାଆନ୍ତି ଶଳା ବାଆଜୀ ଆମକୁ ମେଣ୍ଢାକହି ଗାଳିଦେଇ ଖସିଗଲା । ତାକୁ ଛେଚିବାର ଥିଲା" ।

ଗାଁଆର ମାଗୁଣୀ ବୁଢ଼ା ଏଇ ହଟଗୋଳ ମଧ୍ୟରେ ଜଙ୍ଗଲ ଯାଉଁ ଯାଉଁ ରହି ଯାଇଥିଲା । ଜଙ୍ଗଲ ଦିଗକୁ ବାହାରିଲା । ଦୁଇତିନିଟି ମୁଣ୍ଡିଆ ପାହାଡ ଡେଇଁଲା ପରେ ଯାଇ କିଛି ମିଳିବ । ତିନି ଦିନ ହେଲା ବୁଢା କିଛି ଖାଇନି ।

ବୁଢା ଦେଖିଲା ଶାଳବଣ ଭିତରେ ତେନ୍ତୁଳି ଗଛଟାଏ । ଉପର ଡାଳରେ କଇଁଆ ମାନ ହଲୁଛି । ବୁଢ଼ା ଗଛ ଚଢି ବିକଳରେ ତେନ୍ତୁଳି କଇଁଆ ପେଟେ ଖାଇ ଗୋଛାଏ ଗାମୁଛାରେ ବାନ୍ଧିଲା । ତାପରେ ଓହ୍ଲାଇଲା ତଳକୁ ।

ଦୂରକୁ ଗ୍ରହିଁଲା, ପଶ୍ଚିମାରେ ବେଳ ତରତରି ହେଲଣି । ସ୍ୱସ୍ତିର ନିଶ୍ୱାସଟିଏ ନେଇ ଆଗକୁ ବଢୁଛି ହଠାତ୍ ଗୋଟାଏ ଚୁଚୁ ଶବ୍ଦ ଶୁଭିଲା । ଯେମିତି ବାଛୁରୀ-ଟିଏ ଗାଇ ପହ୍ନାରୁ କ୍ଷୀର ଚୁହୁଛି ଠିକ ସେମିତି । ଗଛତଳକୁ ଭଲକରି ଗ୍ରହିଁଲା । ବୁଢ଼ା ଦେଖିଲା, ମାତ୍ର ଦଶହାତ ଦୂରରେ ମହାବଳ ବାଘୁଣୀଟିଏ ଚିତ୍ ହୋଇ ଆରାମ୍ରେ ଶୋଇଛି ଆଉ ତହିଁକୁ ଆଶ୍ଚର୍ଯ୍ୟ ଧୋବଫରଫର ମେଷଛୁଆଟିଏ ତା'ର ମୁକୁଳା ପହ୍ନାରୁ କ୍ଷୀର ଖାଉଛି ।

ବୁଢାଦିହ ଝାଳନାଳ ହୋଇଗଲା । ଅତର୍କିତ ଦରଦର ଏକଟିଏ ବହିଗଲା ଗୋଡରେ । ପ୍ରାଣ ବିକଳରେ ବୁଢା ଦଉଡ଼ିବା ଆରମ୍ଭ କଲା , ପଛଆଡୁ ସୁର୍ ସୁର୍ ଗୋଟାଏ ଶବ୍ଦ ଶୁଭୁଥାଏ । ବୁଢାର ବଳ ଆଉ ପାଉନଥାଏ, ଗୋଡ଼ ଥମି ଆସୁଥାଏ ହଠାତ୍ ଖଟ୍ ଖଟ୍ ଏକ ଆବାଜରେ ବୁଢା ସଂପୂର୍ଣ୍ଣ ଅଚେତ୍ ହୋଇ ଆଗକୁ ଘୋଷାଡ଼ି ପଡ଼ିଲା ବୁଦାମୂଳରେ । ଅଚେତନ ଆଗରୁ ସେ ଅନୁଭବ କରୁଥିଲା, ବାଘୁଣୀର ଫଝା ।

କିଛି ସମୟପରେ ହାଲୁକାଏ ଶୀତଳପବନରେ ବୁଢା ଚେତା ଫେରି ପାଇଲା । ଚମକି ଉଠିଲା ବେଳକୁ ଦେଖିଲା ପାଖରେ ବାଘୁଣୀ ନାହିଁ, ତା ଦିହରେ କିଛିକ୍ଷତ ନାହିଁ କେବଳ ତାର କୋଳରେ ଚୁ ଚୁ କରି ମୁଣ୍ଡ ଗୁଞ୍ଜୁଛି ସେଇ ଶ୍ୱେତ ସୁନ୍ଦର ଟିକି ମେଷ ଶାବକ ।

ବୁଢ଼ା ଏକଦୀର୍ଘ ସ୍ୱପ୍ନରୁ ଉଠିଲା ଭଳି ପଣିଥରେ ଗ୍ରହିଁଲା ତା'ର ପୃଥିବୀକୁ, ଆକାଶକୁ ଆଉ ସେଇ ମେଷ ଶାବକକୁ । ବୁଢା ଜଙ୍ଗଲ ଆଡକୁ ଗ୍ରହିଁଲା । ପଛ ପାହାଡ଼ ଶିଖରରୁ ଘନକଳା ବାଦଲ ମାଡ଼ି ଆସୁଥିଲା । ବୁଢ଼ା ପୁଣିଥରେ ସ୍ୱପ୍ନାବିଷ୍ଟ ହୋଇ ପ୍ରଣାମ କଲା ଆକାଶକୁ । ମେଷଶାବକକୁ ଦୁଇହାତରେ ଟେକି ବୁଢା ଏଥର କ୍ଷୀପ୍ର ବେଗରେ ଆଗେଇଲା ଗାଁଆ ଆଡକୁ ।

ଗାଁଆ ମୁଣ୍ଡରୁ ହିଁ ବୁଢ଼ାକୁ ଦେଖି ଗାଁଅ ଲୋକ ଘେରିଗଲେ, ଅନେକ ପ୍ରଶ୍ନ, "ଇଏକଣ, ମେଣ୍ଢାଛୁଆଟେପରା, ପାଇଲ କିମିତି ??"

ବୁଢା କିଛି ଉତ୍ତର ଦେଲା ନାହିଁ । ସେଇ ପୋଖରୀ ହୁଡ଼ା ବରଗଛ ଆଡ଼କୁ ଆଗେଇଲା । ଗଛମୂଳରେ ମେଷଛୁଆକୁ ଥୋଇ ସାଷ୍ଟାଙ୍ଗ ପ୍ରଣାମ ପରେ ଧାର ଧାର ଲୁହ, ଅସମ୍ଭାଳ କୋହ, ବାଷ୍ପାକୁଳ ଆବେଗରେ ବୁଢ଼ା ବର୍ଣ୍ଣନା କଲା ତାର ଅପୂର୍ବ ଅନୁଭୂତି ।"

"ମୂଢ଼ମାନେ ତମେ କଳିକାଳର । ମାୟାର କବାଟ ପଡ଼ିଛି ଆଖିରେ, ତୁମେ କି ବୁଝିବ ବ୍ରହ୍ମ ମାୟାର ମହିମା । ଆରେ ଟୋକାଏ ତମେ କହୁଥିଲ ନା, ମଉନୀ ବାବା କହିଲା ପଦୁଟିଏ "ମେଣ୍ଢା" । ତୁମେ କି ବୁଝିବ ମଉନୀର ମାୟାକୁ । ଏଇଦେଖ, ପେଶିଛି ମଉନୀ ମେଷପୁରୁଷ– ମୁଁ ଏଇ ଆଖିରେ ଦେଖିଛି, ମହାବଳ

ବାଘୁଣୀ– ପସର ଖୋଲି ଦେଇଥାଏ– ତାର ପଛା– ଆଉ ଏଇ 'ମେଷ ପୁରୁଷ' କି, ଅମୃତ ଆଗ୍ରହରେ ନିଶଙ୍କରେ ପାନ କରୁଥାଆନ୍ତି ବାଘୁଣୀର କ୍ଷୀର । ଅମୃତ ଦୁର୍ଲଭ ଅମୃତ ଠପ୍ ଠପ୍ ବହିଯାଉଥାଏ ଆପେ ଆପେ - ବାଘୁଣୀର ପଛାରୁ ।"

ପୁଣି ଅନେକ ପ୍ରଶ୍ନ "ତମକୁ ବାଘୁଣୀ କିଛି କଲନାହିଁ ? ତମକୁ ଭୟ ଲଗିଲନାହିଁ ? ତାପରେ କ'ଣ ହେଲ ? କେମିତି ସାହାସ କଲ ବାଘୁଣି କୋଳକୁ ଛୁଆକୁ ? କିମିତି କିମିତି କିମିତି ? ?"

ବୁଢ଼ା ଗମ୍ଭୀର ହୋଇ କହିଲ "କ'ଣ ବଖାଣିହୁଏ ସେହି ମହିମା ! କ୍ଷଣିକେ ମୁଁ ଜାଣିଗଲି, ଯୋଡ଼ହାତ ହେଲି, ବ୍ରହ୍ମରୂପୀ ନିରକାର, ବାଘୁଣୀ ରୂପ ତେଜି, ସତ୍ରୂପରେ ଉଭହେଲେ, ଆକାଶକୁ ଭେଦୀ ସେଇ ରୂପ-କି କଗତଜିଣା ଆଶିର୍ବାଦର ହସଟିଏ-ମୋ ହାତକୁ ବଢାଇ ଦେଲେ-ମହାଶୁନ୍ୟରୁ ଏଇ ମେଷ-ପୁରୁଷ-କହିଲେ "ଯାଆରେ ବୁଢା ଯାଆ– ମୁଁ ଏଇ ରୂପରେ ଯିବି ସବୁଦୁଃଖ ହରିବି-ସବୁଦୁଃଖ"– ବୁଢା କିଂଚିତ ରହିଯାଇ କହିଲ "ଦେଖ ମୁଢ଼ମାନେ ଆକାଶକୁ ଦେଖ" ।

ସେତେବେଳକୁ କଳାମେଘ ଘୋଟିଗଲଣି । ବରକକୋଳିଆ ଠୋପା, ଆକାଶରୁ ଖସିଲଣି । ସମସ୍ତଙ୍କ ଆଖିରେ ବିସ୍ମୟଭର କୃତଜ୍ଞର ଧାରଧାର ଲୁହ ! ସ୍ତ୍ରୀ ଲୋକମାନେ ହୁଳହୁଳି ଦେଲେ । ଯୁବକମାନେ ନିର୍ବାକ୍ ଅନାଇ ରହିଲେ । ବୃଦ୍ଧେ ବରଗଛ ମୂଳରେ ପୃଥିବୀରେ ଲମ୍ବ ହୋଇ ପ୍ରଣାମ ଜଣାଇଲେ ।

ବୁଢ଼ା ମେଷ ଛୁଆକୁ ନେଇ ଘର ନେଉଟିଲ । ମାଧଗଉଡ଼ ତାଟିଏ କ୍ଷୀର ଆଣି ବୁଢ଼ା ଆଗରେ ଥୋଇ ଜୁହାର ହୋଇ କହିଲ । "ନିଅ ଅଜା, ! ମେଷ-ପୁରୁଷଙ୍କୁ ଭୋଗ ଦିଅ" । ଗାଁଆର ସ୍ତ୍ରୀଲୋକ ଯିଏ ଯାହା ପାଇଲେ, ମାଣ୍ଡିଆ ଜାଉ, ମହୁଲିପିଠା, ବୁଢା ବାରଣ୍ଡାରେ ଥୋଇ ଦଣ୍ଡବତ ହେଲେ । ନଙ୍ଗଲ ପିଲଟାଏ ସାତଆଠ ବର୍ଷର କହିଲ "ଏ ଅଜା ! ରାତିରେ, ମେଣ୍ଢାଛୁଆ ବାଘ ହେଲେ, ତମେ କ'ଣ କରିବ ?"

ବୁଢ଼ା ତା ଆଡ଼କୁ କଟମଟ କରି ଚାହିଁଲ । କିନ୍ତୁ ସତରେ ମନଭିତରେ ଛାନିଆ ପଶିଲ । ସିଂହରୂପୀ ନାରାୟଣଙ୍କୁ ସାମ୍ନା କରିବା ପ୍ରହ୍ଲାଦର ତାକତ୍ ତାର ତା'ଠି

କାହିଁ । ଅନ୍ୟଜଣେ ବୁଢ଼ା କହିଲା "ଠାକୁର କ'ଣ ଘରେ ରହିବେ, ତାଙ୍କ ଆଜ୍ଞାନ ସେ ବାଛନ୍ତୁ ।"

ବୁଢ଼ା ହାତରୁ କ୍ଷୀର ତାଟିଏ ଖାଇ ମେଷଛୁଆଁ ସଦ୍ୟଭିଜା ଗାଁ ଦାଣ୍ଡରେ ନାଚି ନାଚି ବରଗଛ ଦିଗକୁ ମୁହାଁଇଲା ।

ବୁଢ଼ା ପିଣ୍ଡାରେ ଗାଁଆ ଲୋକ ଜମାହୋଇ, ଶୁଣୁଥାଆନ୍ତି ବୁଢ଼ାର କାହାଣୀ । ହଠାତ୍ ଗାଁଆ ମୁଣ୍ଡରେ ବାଘର ହେଣ୍ଟାଳ ଶୁଭିଲା । ମେଷଛୁଆକୁ ସେମିତି ବାହାରେ ଛାଡ଼ି ଯିଏ ଯାହାର ଘରେ ପଶିଲେ । କେହି ବାହାରକୁ ଭରସିଲେ ନାହିଁ । ବାଘ ଗାଁଆ ଦାଣ୍ଡରେ ଏମୁଣ୍ଡରୁ ସେମୁଣ୍ଡ ହେଣ୍ଟାଳ ମାରୁଥାଏ । ମେଷ-ଛୁଆଟି ବିକଳରେ ମେ ମେ ରଡ଼ିଛାଡ଼ି ଆଶ୍ରୟ ପାଇଁ ଦଉଡୁଥାଏ । ଗଡି ଅଧଯାଏଁ ଏମିତି ଶବ୍ଦ ଶୁଭୁଥାଏ, ତାପରେ ଆଉ କିଛି ଶୁଭିଲା ନାହିଁ ।

ସେଦିନ ବୁଢ଼ା ତିନି ଦିନର ଭୋକ ଏକା ଥରକେ ମେଣ୍ଟାଇଥାଏ । ଗଡିଅଧରୁ ପେଟ ଘଡ଼ଘଡ଼ କରି ଅତର୍କ୍କା ଦୁଇ ଦେଖାଇଲାଣି । ବାଘ ଭୟରେ ବୁଢ଼ା ଏପଟ ସେପଟ ହୋଇ ସକାଳ ନ ହେଉଣ ଦଉଡ଼ିଲା ପୋଖରୀ ହୁଡ଼ାକୁ ।

ହୁଡ଼ା ପାଖରେ କାମସାରି ପାଣିପାଇଁ ପୋଖରୀ ଭିତରକୁ ଯାଇ ଯେମିତି ହାତ ବଢ଼ାଇଛି, ନିକଟରୁ ଏକ ବିରଟ ବାଘର ହେଣ୍ଟାଳ ଶବ୍ଦରେ ଛାନିଆରେ ପଛକୁ ନେଉଟିପଡ଼ିଲା । ସକାଳ ହେଲଣି । ବୁଢ଼ା ଦେଖିଲା ମଝିପୋଖରୀରେ ମୁଣ୍ଡଯାଏଁ ବୁଡ଼ିଛି ପଙ୍କ ଭିତରେ ମହାବଳ ବାଘଟିଏ । ଉପରକୁ ଆସିବାକୁ ଯେତିକି ବଳ କରୁଛି, ସେତିକି ସେତିକି ଭିତରକୁ ଗଳିପଡୁଛି । ବୁଢ଼ା ଚିତ୍କାର କଲା ହୁଡ଼ାକୁ ଉଠି ।

ଗାଁଆ ଲୋକ ସବୁ ଜମିଗଲେ । ଟୋକାମାନେ ଟାଙ୍ଗିଆ ଫାର୍ସାଧରି ଘେରିଗଲେ । ବାଘ କିନ୍ତୁ ପେଟେ ପଙ୍କ ପିଇ ଛଟପଟ ହୋଇ ନିଷ୍କଳ ହୋଇ-ଯାଇଥାଏ । ଜଣେ ବୁଢ଼ା କହିଲା ବାଘୁଣୀ ଆସିଥିଲା ତାର ଛୁଆକୁ ଥନ ଦେବାପାଇଁ ।

ଏ ମଧ୍ୟରେ ସାହସୀ କେଇଜଣ ଦଉଡ଼ି ପକାଇ ମଲବାଘକୁ ଓଟାରି ଆଣିଲେ ହିଡ଼କୁ । ବାଘୁଣୀ ନୁହଁ ମହାବଳ ବାଘ ତେବେ ଏଇ ପଙ୍କରେ ପଡ଼ିଲା କେମିତି ? ଆଉ ସେଇ ମେଷଛୁଆ କାହିଁ ।

ସମସ୍ତେ ପରସ୍ପରକୁ ଗୁହିଁଲେ । ନଙ୍ଗଲା ପିଲାଟାଏ ହୁରିପକାଇଲା "ହେଇରେ ସେଇ ମେଣ୍ଢାଛୁଆ ଶୋଇଛି ସେଇ ବରଗଛ ମୂଳରେ ।

ସମସ୍ତେ ସେଠିକି ଧାଇଁଲେ । ବୁଢ଼ାଟି ଏଥର ମେଷଛୁଆର ନିକଟରେ ଲମ୍ବ ହୋଇ ପଡ଼ିଗଲା । କହିଲା "ହେ ମେଷପୁରୁଷ, ଧନ୍ୟହେଲୁ ତମର ମାୟାରେ, ବାଘକୁ ଠେଲିଦେଇ ପଙ୍କ ଭିତରକୁ, ଉଦ୍ଧାରକଲ ଆମକୁ ।"

ଗାଁ ଲୋକ ସମସ୍ତେ ଡ଼ାକିଲେ "ହରିବୋଲ", ମେଷ ମାହାତ୍ମ୍ୟ ବଢ଼ିବାକୁ ଲାଗିଲା ।

ଆଉ ଦିନକର କଥା, ଗାଁଆର କେଇଜଣ ରତିଅଧରୁ ପାଖ ଜଙ୍ଗଲକୁ ମହୁଲ ଗୋଟାଇବା ପାଇଁ ଯାଉଥିଲେ । ବାହାରେ ପହରା ଦେଉଥିବା ମେଷଛୁଆ ତାଙ୍କୁ ଅନୁସରଣ କରି ଗ୍ରଲିଥାଏ । ବୁଦ୍ ବୁଦ୍‌କା ଜଙ୍ଗଲ ଭିତରୁ ହଠାତ୍ ପଞ୍ଝାଏ ବଣୁଆ ଭାଲୁ ହାବୁଡ଼ିଗଲେ । ଟିକିଏ ଅନ୍ଧାର ଥାଏ, ତେଣୁ ଜଣେ ମଶାଲଟିଏ ଜାଳି ରାସ୍ତା ଦେଖାଉଥାଏ । ଭାଲୁଙ୍କୁ ଦେଖି ମଶାଲ ଫିଙ୍ଗି ପ୍ରାଣ ବିକଳରେ ସମସ୍ତେ ଫେରିଲେ ଗାଁଆକୁ । କିନ୍ତୁ ମେଷ ଶାବକ ଉଷୁମ ମଶାଲ ଗ୍ରରିକଡ଼େ ନିଃଶଙ୍କରେ ଦଣ୍ଡାୟମାନ ।

ଭାଲୁଦଳ ଝପଟି ଆସିଲେ ମେଷ ପାଖକୁ । ମେଷଛୁଆ ଡ଼ିଆଁଟେ ମାରି ଟିକିଏ ଘୁଞ୍ଚିଗଲା । ଗୋଟାଏ ଭାଲୁ ଦିହରେ ଲାଗିଲା ନିଆଁ । ସେ ବିକଳରେ ଜାବୁଡ଼ି ଧରିଲା ଅନ୍ୟ ସାଥୀକୁ । ଏମିତି ଧରାଧରିରେ ସମସ୍ତ ଭାଲୁଙ୍କ ଦିହରେ ଲାଗିଲା ନିଆଁ । ଗାଁଆ ମୁଣ୍ଡରେ ଆସି ସବୁ ଭାଲୁ ପଡ଼ିଲେ ଅଧାଶିଝା ଅବସ୍ଥାରେ । ଲୋକମାନେ ଦେଖିଲେ ତାଙ୍କ ପଛରେ ଚୁପ୍‌ଗୁପ୍ ନାଚିନାଚି ଆସୁଛି ମେଷଛୁଆ !

ମେଷ ପୁରୁଷଙ୍କର ଭଲୁକ ନିଧନ ସମାଗ୍ରର ଗାଁଆ ଗାଁଆ, ହାଟବାଟ, ସହରଯାଏଁ ବ୍ୟାପିଗଲା । ଗାଁଆ ଲୋକେ ମେଷ ବନ୍ଦନାର ବିରଟ ଆୟୋଜନ

କଲେ । ମେଷତୀର୍ଥ ବୋଲି ଗାଁଆର ମଧ୍ୟ ନାମ ଖ୍ୟାତି ରଟିଗଲା । ସ୍ଥିରହେଲା ମେଷପୁରୁଷ ପାଇଁ ମନ୍ଦିରଟିଏ ହେବ ।

ଗାଁଆର ସମସ୍ତେ ମିଶି ଚଉଧୁରୀଙ୍କ ଘରକୁ ଗଲେ, ମେଷ ମନ୍ଦିର ପାଇଁ ସାମାନ୍ୟ କିଛି ଚାନ୍ଦା ପାଇଁ । ଏସବୁ କିନ୍ତୁ ଚଉଧୁରୀଙ୍କ ମନକୁ ଯାଉନଥାଏ । ସବୁ ଘଟଣାକୁ କାକତାଳିକ ଯୋଗାଯୋଗ କରି ଉପହାସ କରୁଥାଆନ୍ତି । ଲୋକଙ୍କର ଚାନ୍ଦା ମାଗିବା ଶୁଣି ଚଉଧୁରୀ ଚାନ୍ଦାତ ଦେଲେନାହିଁ, ଲୋକଙ୍କର ସମ୍ମୁଖରେ ମେଷଛୁଆକୁ ଏମିତି ନାତଟିଏ ଦେଲେ ଯେ, ବିଚରା ମେମେ କରି ଲୋକଙ୍କ ପାଖକୁ ଫୋପାଡ଼ି ହୋଇପଡ଼ିଲା ।

ଚଉଧୁରୀଙ୍କର ବୋଲହାକ କରା ପହିଲିମାନବନା, ଚଉଧୁରୀଙ୍କୁ ସମର୍ଥନ କରି କହିଲା "ମେଣ୍ଢାଛୁଆ ଯଦି ଏମିତି ଝିଆଣିଆ ଆଣୁନ ତାକୁ ଆମ ଆଲ୍‌ସିସିଆନ୍ କୁକୁର ସହ ଲଢେଇ କରିବା । ମେଣ୍ଢା ଜିଣିଲେ ମାନିବି ଠାକୁର, ଆଉ ହାରିଲେ ହବ ତ କୁକୁରର ଆହାର ।"

ଗାଁଆ ଲୋକ କ'ନମୁଣ୍ଡ ଆଉଁସି ଚୁପ୍ ରହିଲେ । କାରଣ ଆଲ୍‌ସିସିଆନ୍ ଏଇ ମାସେ ତଳେ ଗୋଟାଏ ଦୁର୍ଦ୍ଦାନ୍ତ ଷଣ୍ଢକୁ ଠିଆ ଠିଆ ଚିରି ଦେଇଥିଲା । ଟୋକାଏ ମଜା ଦେଖିବାକୁ କହିଲେ "ହେଇଯାଉ ହେଇଯାଉ" ।

ପରିସ୍ଥିତିରେ ଆଉ ଅନ୍ୟ ଉପାୟ ନଥିଲା । ମେଷକୁ ପାଇଥିବା ବୁଢ଼ା ମୋଟେ ମଙ୍ଗୁ ନଥାଏ । ବୁଢା ଭବିଲା ସବୁ ଏଇଠି ସରିଲା । ଯାହାହେଉ, ମେଣ୍ଢାକୁ ନେଇ ଗାଁଆ ମନ୍ଦିରକୁ ଗଲା । ବୁଢା ଏବେ କି ପଇସା ପାଉଛି, ଗତ-ଗତିରେ ଦିଭରି ଗଞ୍ଜେଇ ଆଣି ବାଟିଥାଏ, ତାକୁ ମେଷ ବନ୍ଦନା କ୍ଷୀରରେ ପ୍ଯାକକରି ଚାଟିଆଟିରେ ରଖିଥାଏ । ତାଟିଆ ଧରି ମନ୍ଦିର ସାମ୍ନା ବଉଳଗଛ ଚଉତରକୁ ଆସିଲା । ବଉଳଗଛ ପାଖରେ ଚଉତରଟି ଟାଣ ପଥରରେ ଖଞ୍ଜା ହୋଇଛି । ପାଖକୁ ଲାଗି କୂଅଁଟିଏ ତା'ଘେରିଆଡେ ମଧ୍ୟ . ସିମେଣ୍ଟର ଚାନ୍ଦନୀ ପଡ଼ିଛି । ବୁଢ଼ା ଭଙ୍ଗପାଇଁ କୂଅରୁ ପାଣି ବାଲ୍‌ଟିରେ କାଢୁଥାଏ ।

ଆରପଟରୁ ଚଉଧୁରୀ, ବନା ପହିଲିମାନ୍ ଅଣ୍ଟିଏ ଉଚର ଆଲ୍‌ସିସିଆନ୍‌କୁ ଆଣି ଆସି ପହଞ୍ଚିଗଲେ । ଚଉଧୁରୀ ବଉଳଗଛ ଚାନ୍ଦନୀରେ ବସି ନିଶରେ ହାତ

ସାଉଁଳୁ ଥାଆନ୍ତି । ବନା ପହିଲିମାନ କୁକୁରକୁ ଆଣିଲାକ୍ଷଣି, କୁକୁର ଦୃଷ୍ଟିରେ ତାଟିଆରେ ଥିବା ବୁଢ଼ାର କ୍ଷୀର ପଡ଼ିଲାକ୍ଷଣି, ପହିଲ୍‌ମାନଙ୍କୁ ଓଟାରି, ତାଟିଆର ସବୁକ୍ଷୀର ଶୋଷିଦେଲା ।

ବୁଢ଼ା ବିଚରା ଏଥର ମେଣ୍ଢାଛୁଆକୁ ଛଳ ଛଳ ଆଖିରେ ଚଉତରା ତଳକୁ ଓହ୍ଲାଇ ଦେଲା । ମେଷଛୁଆ କୁକୁରକୁ ଦେଖି ତୀବ୍ର ବେଗରେ ତା ଆଡ଼କୁ ନାଚି-ନାଚି କୁଦିଗଲା । ଆଲ୍‌ସିସିଆନ୍ ତାର ଜୀବନଦଶାରେ ଏମିତି ଟିକି ମେଷ ଶାବକଟିଏ ତା ପାଖକୁ ମାଡ଼ି ଆସିବ ବୋଲି ଭାବିନଥିଲା । ଭେଭେ କରିବା ଆଗରୁ ମେଷଛୁଆ କୁକୁରର ପଛ ଦୁଇଗୋଡ ସନ୍ଧିରେ ଲାଙ୍ଗୁଡ଼କୁ କାମୁଡ଼ି ଧରିଲାଣି ।

ଚଉଧୁରୀ ରାଗିଗଲେ । କୁକୁରକୁ ହାତକୁ ନେଇ ଡ଼ାକିଲେ "ମାର୍ ତ କୁ ମାର୍" ।

କୁକୁର ମୁନିବର ଆଦେଶ ପାଇ ବୀର ବିକ୍ରମରେ ଝପଟି ଆସିଲା ଚଉତରା କଡ଼ର ମେଷ ପାଖକୁ । ମେଷଛୁଆ ଏକାଡ଼ିଆଁରେ ବୁଢ଼ା କୋଳରେ । କୁକୁର ମୁଣ୍ଡ ନିର୍ଘାତ୍ ପିଟି ହୋଇଗଲା ଚଉତରା ଚଟାଣରେ । ରକ୍ତ ଧାର ଧାର ବହିବାକୁ ଲାଗିଲା । ସମସ୍ତେ ନିର୍ବାକ ।

ମେଷଛୁଆ ବୁଲୁଥାଏ କୁଅଁର ଗ୍ରନ୍ଦନୀରେ ନିବତାରେ । ଚଉଧୁରୀ କୁକୁରକୁ ଆଦେଶିଲେ "ମାର୍ ତାକୁ ମାର୍" ।

କୁକୁର ଏଥର ଠିକ୍ ଲକ୍ଷ୍ୟ କରି ଲମ୍ଫ ପ୍ରଦାନ କଲା ମେଷ ଉପରକୁ । ମେଷଛୁଆ ଡ଼ିଆଁମାରି ତଳକୁ ଖସିଲା । ଆଉ କୁକୁର ସିଧାଯାଇ ପଡ଼ିଲା କୂଅଁ ଭିତରେ । କିଛିକ୍ଷଣ ଭେଭେ ହୋଇ ଆଉ କିଛି ଶୁଭିଲା ନାହିଁ । କୂଅଁ ଓଝଲାପାଇଁ ପ୍ରାୟଶ୍ଚିତପାଇଁ ଚଉଧୁରୀ ଗଣିଲେ ଦୁଇଶହ ଟଙ୍କା । କୁକୁର ମଲା, ବନା ପହିଲମାନ ମେଷଛୁଆକୁ ମୁଣ୍ଡିଆମାରି ହେଲା ଗୋଟାଏ ପ୍ରଧାନ ଭକ୍ତ ।

ସେଦିନ ଚଉଧୁରୀ ଘରକୁ ଗ୍ରନ୍ଦାପାଇଁ ଯାଇଥିବା ଗ୍ରାମବାସୀଙ୍କ ଗହଣରେ ମିଶିଯାଇଥାଏ ଡ଼କାୟତଦଳର ଜଣେ ଠଉରିଆ । ରାତିରେ କେମିତି ଡ଼କାୟତି

ଙ୍କଲେ ସୁବିଧା ହେବ ସବୁ ଅନୁମାନ କରିବା ତାର କାମ । ଯୋଜନା ଅନୁଯାୟି ଘଡିଅଧକୁ ଚଉଧୁରୀ ଘରେ ଚଡାଉକଲେ ଡ଼ାକୁଦଳ ।

ଚଉଧୁରୀଙ୍କୁ ଟାଣିଆଣି ବାନ୍ଧିଦେଲେ । ଅନ୍ୟ ପରିବାରର ସମସ୍ତଙ୍କୁ ଗୋଟାଏ କୋଠରୀରେ ବନ୍ଦକରି ଦେଲେ । ଚଉଧୁରୀ ଗ୍ରାମବାସୀଙ୍କ ସାହାଯ୍ୟ ପାଇଁ ବିକଳରେ ଡାକ ଛାଡ଼ିଲେ । କେହି ଆସିଲେ ନାହିଁ । ଏକେତ ଚଉଧୁରୀଙ୍କୁ କେହି ଭଲ ପାଉନଥିଲେ, ଦ୍ୱିତୀୟରେ ଡକାୟତଙ୍କୁ ସାମ୍ନା କରିବ କିଏ ।

ଏ ମଧ୍ୟରେ ଗାଁଆ ବଉଳଗଛ ମୂଳରେ ଶୋଇଥିବା ମେଷଛୁଆ ଚଉଧୁରୀଙ୍କ ପାଚେରୀ କବାଟ ଖୋଲା ଥାଉ ମଣିଷ ପାଟି ଶୁଣି ଧୀରେ ଧୀରେ ଡ଼କାୟତଙ୍କର ପଛରେ ଭିତରକୁ ପଶି ଆସିଥାଏ । ଚଉଧୁରୀ ବିକଳରେ ରଡ଼ି ଛାଡୁଥିବା ବେଳେ, ଡ଼କାୟତ ସର୍ଦ୍ଦାର ମେଣ୍ଢାଛୁଆକୁ ଭିତରକୁ ପଶିଆସୁଥିବା ଦେଖି ଉପହାସରେ କହିଲା "ଆରେ ଚଉଧୁରୀ ! ମେଣ୍ଢାପଲ ଗାଁଆର ଛେଳୁଆଙ୍କୁ ଡ଼ାକୁଛୁ କାହିଁକି, ଡ଼ାକ୍ ବରଂ ଏଇ ମେଣ୍ଢାକୁ, ସେହେଲେ ତୋତେ ରଖିବ" ।

ଚଉଧୁରୀ ଏଥର କାନ୍ଦିବାକୁ ଲଗିଲେ, ଅତ୍ୟନ୍ତ ଅସହାୟରେ । ଡକାୟତମାନେ ଟ୍ରେଜରୀ ଭଙ୍ଗି ସବୁ ବସ୍ତାରେ ଭରିଲେ । ସୁନା ରୁପା, ମୂଲ୍ୟବାନ ଚିଜ ଯାହାଥିଲା ସବୁ ଛଅଟି ବସ୍ତାରେ ବୋହି ଆଣିଲେ । ସର୍ଦ୍ଦାର୍ ଚଉଧୁରୀଙ୍କ ପାଖରେ, ଛିଡ଼ାହୋଇ ଅଣ୍ଟାରୁ ମଦ ବୋତଲଟିଏ ବାହାରକରି ପିଉଥିବା ବେଳେ, ମେଣ୍ଢାଛୁଆଟି ଆସି ତା' ଦିହରେ ଘସିହେଲା ।

ମେଷଛୁଆଟି ଏମିତି ସୁନ୍ଦର ଦେଖା ଯାଉଥାଏ ଯେ ସର୍ଦ୍ଦାର୍ ତାକୁ ଗୋଟାଏ ହାତରେ ଉପରକୁ ଟେକି କହିଲା, "ଆରେ ଏଇଟା ତ ଭଲ ଚିଜଟିଏ, ବାଟରେ ପୋଡ଼ି ଖାଇବା" ।

ମେଷଛୁଆଟିକୁ ହାତରେ ଧରି ଡ଼କାୟତ ସର୍ଦ୍ଦାର୍ ଆଗରେ ଆଉ ଅନ୍ୟମାନେ ତାକୁ ଅନୁସରଣ କରି ଗ୍ଭଲିଲେ । ଅମାବାସ୍ୟା ରାତି । କିଛି ସମୟପରେ ପଡ଼ିଲା ଜଙ୍ଗଲ । ସର୍ଦ୍ଦାର୍ ଆଗରେ ରାସ୍ତା ଦେଖାଇ ଗ୍ଭଲିଥାଏ । ପଛରେ ଅନ୍ୟମାନେ ବସ୍ତା ଆଉ ଟର୍ଚ୍ଚ ଧରି ଯାଉଥାଆନ୍ତି ।

ହଠାତ୍ ଦେଖାଗଲା ସାମ୍ନା ସର୍ଦାର ମୁଣ୍ଡ ଉପରକୁ ଝାଂପି ପଡ଼ିଛି ମହାବଳ ବାଘଟିଏ । କେହି ପ୍ରସ୍ତୁତ ନଥିଲେ, ଏମିତି ଅଘଟନ ଆକ୍ରମଣକୁ । ହଡ଼ବଡ଼େଇ ପୁଣିଥରେ ସମସ୍ତେ ବନ୍ଧୁକ ଆଉ ଟର୍ଚ୍ଚ ସଜାଡ଼ିବା ବେଳକୁ ଆଗରେ ବାଘ ନଥିଲା କି ସର୍ଦାର୍ । କେବଳ ମେଣ୍ଢାଏ ସଦ୍ୟ ରକ୍ତ ମଝିରେ ମେଷଛୁଆଟି ଛିଡ଼ା ହୋଇ ଘଟି, ଉଠି ଆସୁଛି ।

ଡକାୟତଦଳର ଦଉରିଆ ତ ଆଗରୁ ମେଷଛୁଆର ଉତ୍ପତ୍ତି, ବ୍ୟାଘ୍ରନିଧନ, ଉଲ୍ଲୁକ ଦହନ, ଶ୍ୱାନ ସମ୍ମୋହନର କାହାଣୀମାନ ଶୁଣିଥିଲା । ଏଥର ସେହିଁ ସର୍ବପ୍ରଥମେ ମେଷଶାବକ ନିକଟରେ ଲମ୍ବହୋଇ ପଡ଼ିଯାଇ କହିଲା "ହେ ମେଷାବତାର ! ଆମକୁ ରକ୍ଷାକର ! ଆମେ ପାପୀମାନେ, ପ୍ରଭୁ, ଆମକୁ ନିର୍ଦ୍ଦେଶ ଦିଅ" । ଆମ ଆଗରେ ବ୍ୟାଘ୍ର ରୂପରେ ସର୍ଦାର୍‌ଙ୍କୁ ନିପାତକଲି ଆମକୁ କ୍ଷମାକର ପ୍ରଭୁ ! କ୍ଷମାକର ।"

ମେଷଛୁଆ ଏଥର ମୁକ୍ତହୋଇ ସ୍ୱାଭାବିକ ଭାବରେ ଗାଁଆ ଆଡ଼କୁ ମୁହାଁଇଲା ।

ଡ଼କାୟତମାନେ ଅନୁସରଣ କରି ଚଉଧୁରୀ ଘରଯାଏଁ ଆସିଲେ । ଚଉଧୁରୀଙ୍କୁ ବନ୍ଧନ ମୁକ୍ତକରି ମେଷପୁରୁଷଙ୍କର ବାଘାବତାର ଏବଂ ସର୍ଦାର ନିଧନର ଲୋମ ହର୍ଷଣକାରୀ କଥା ବୟାନ୍ କରି, ପୁଣିଥରେ ମେଷପୁରୁଷଙ୍କ ସମ୍ମୁଖରେ ସମସ୍ତ ହୃତ ସଂପତ୍ତି ସମର୍ପଣ କରି, ଦଣ୍ଡବତ ହେଲେ ।

ସକାଳ ହୋଇ ଯାଇଥାଏ । ଗାଁଆ ଲୋକ ମଧ୍ୟ ଜମିଗଲେ । ଚଉଧରୀ ଛଳଛଳ କୃତଜ୍ଞତାରେ ହୃତ ସଂପତ୍ତିର ଅର୍ଦ୍ଧେକ ମେଷ ମନ୍ଦିର ତଥା ମେଷଉଦ୍ୟାନ ପାଇଁ ଦାନସୂତ୍ରରେ ତତ୍‌କ୍ଷଣାତ୍ ଗ୍ରାମବାସୀଙ୍କୁ ପ୍ରଦାନ କରି, ମେଷପୁରୁଷଙ୍କ ନିକଟରେ ଲମ୍ବହୋଇ କହିଁ କହିଁ କାନ୍ଦି କ୍ଷମା ପ୍ରାର୍ଥନା କଲେ । ଚଉଧୁରୀଙ୍କ ବିସ୍ତୃତ କ୍ଷେତରେ ବରକୋଳି, ଦୁବଘାସ, ତଥା ଅନ୍ୟାନ୍ୟ ମେଷଭୋଗ୍ୟ ଗୁଳ୍ମାଦିର ଉଦ୍ୟାନର ପ୍ରସ୍ତୁତି ଆରମ୍ଭ କରିଦେଲେ ।

ଏଇ ସାମାନ୍ୟ କଥାକାରର କର୍ମସ୍ଥାନ ମେଷାବତରିତ ଗ୍ରାମଠୁଁ ମାତ୍ର କେଇ ମାଇଲ ଦୂରରେ । ମଝିରେ କେବଳ କେଇଟି ମୁଣ୍ଡିଆ ପାହାଡ଼ । ଗ୍ରାମଟି

ମେଷତୀର୍ଥରେ ପରିଣତ ହୋଇ ସାରିଥାଏ । ଗାଁଆର ମାଷ୍ଟର୍ ଚାକିରୀ ଭିତରେ ଏଣୁତେଣୁ ଗୋଟାଏ ଦିଓଟି କବିତା ଓ ଗଳ୍ପଲେଖି, ଲୋକମାନଙ୍କ ମଧ୍ୟରେ ମୋର 'କବି' ଭାବମୂର୍ତ୍ତିଟା ଦାନା ବାନ୍ଧିବାର ବେଳ । ତେଣୁ କବିତ୍ୱକୁ ଆଉ ଟିକିଏ ପ୍ରଭାବଶାଳୀ କରିବା ପାଇଁ, ମୁଁ କିଛି ଗୋଟାଏ ବିସ୍ମୟକାରୀ ଉପଜୀବ୍ୟର ସନ୍ଧାନରେ ଥାଏଁ । ମେଷପୁରୁଷଙ୍କର ବିଭିନ୍ନ ଅଭିଯାନର ବିବରଣୀମାନ ଶୁଣି ମୁଁ "କବିତୁଣ୍ଡ ମେଣ୍ଢାମୁଣ୍ଡ" – ଆପ୍ତ ବାକ୍ୟର ସ୍ରଷ୍ଟି କର୍ତ୍ତାଙ୍କୁ ମନେ ମନେ ପ୍ରଣାମ କରୁଥାଏଁ । ମେଷମଥା ଏବଂ କବି କଥାର ସାମଞ୍ଜସ୍ୟକୁ ଏମିତି ପରଖିଥିବା ସେଇ ମହାପୁରୁଷ, ଏଇନେ 'ତୁଣ୍ଡ'ରେ ନହେଲେ ମଧ୍ୟ ବିବର୍ତ୍ତିତ ସୁଲଭ ଲେଖନୀ ମାନଙ୍କରେ କେତେ ଯେ ଗ୍ରନ୍ଥ ଲେଖିଥାଆନ୍ତେ ଭାବୁଥିଲି ।

ତେବେ ମେଷତୀର୍ଥ ଯାଇ ସତ୍ୟାନୁସଂଧାନ ଥିଲା ଏଇ କଥାକାରର ଏକ ସ୍ୱାଭାବିକ ଇଚ୍ଛା । ଯଦି ତା ମୁଁ ଜାଣିଥିଲି ଯେ, ଆଧ୍ୟାତ୍ମିକ ଘଟଣାମାନଙ୍କୁ ଆଧାର କରିଥିବା ସୌଭାଗ୍ୟଶାଳୀ କବି ପ୍ରତିଭାମାନ ସଦାକାଳେ ସତ୍ୟାନୁସନ୍ଧାନରେ ମାରାତ୍ମକ ପରିଣାମ ଭୋଗ କରିଛନ୍ତି କିଏ, ଭାନୁମତୀର ତିଳ ସନ୍ଧାନରେ ତ ଆଉ କିଏ ସୟତାନର ପଦ (ସୋଟାନିକ୍ ଭର୍ସ) ବିଧାନରେ ।

ଅନେକ ବିଚାର ପରେ ସେଦିନ ସାଇକେଲରେ ବାହାରିଲି ମେଷତୀର୍ଥ । ବାଲିଗଡ଼ାରେ ସାଇକେଲ ଚାଲିଲା ନାହିଁ । ଆଗରେ ଦେଖିଲି ମେଷପାଳକ ଜଣେ ଦଳେ ମେଣ୍ଢାପଲ ଧରି ସେଇ ଗାଁଆଡ଼େ ଯାଉଥାଏ । ମୁଁ ତା ସହ ଗପି-ଗପି ଚାଲିଲି । ବିଚରା ମଧ୍ୟ ମେଷପୁରୁଷଙ୍କର ମାହାତ୍ମ୍ୟ ଶୁଣି ବାହାରିଛି ଦର୍ଶନ ପାଇଁ । ମେଣ୍ଢାପଲଙ୍କୁ ଜଗିବ କିଏ ସାଙ୍ଗରେ ନେଇଛି, ନେଉଟି ଆସିବ ଉପର ଓଳି ।

ମେଷତୀର୍ଥ ଗାଁଆରେ ପହଞ୍ଚିଲା ବେଳକୁ ବେଶ୍ ଜନଗହଳୀ । ଗାଡ଼ିମଟର ଭିଡ଼ । ବଜାର ବସିଗଲଣି । ମେଣ୍ଢାଦଳଙ୍କୁ ମେଷପାଳକ ଗୋଟାଏ କଡ଼କୁ ଆଡେଇ ଗୋଟାଏ ଉଚ୍ଚା ପିଣ୍ଡାରୁ ଜନଗହଳୀ ମଧ୍ୟର ଅର୍ଦ୍ଧନିର୍ମିତ ମନ୍ଦିର ଏବଂ ଉଦ୍ୟାନ ମଧ୍ୟରେ ବରକୋଳି ଗଛ ପାଖରେ ଚରୁଥାଏ । ମେଣ୍ଢାଙ୍କୁଆଡୁ ଆମେ

ଦର୍ଶନ କରିପାରିଲୁ । ସହରର ମୋଟା ମୋଟା ବ୍ୟବସାୟୀ, ସ୍ତ୍ରୀପୁରୁଷ ସୁନାଆଣ୍ଟୀ, ରୂପାଥାଳୀରେ ଦୂରରୁ ଆଳତୀ କରୁଥାଆନ୍ତି ମେଷପୁରୁଷଙ୍କର ।

ଏ ମଧ୍ୟରେ ଗୋଟାଏ ଅଘଟଣ ଘଟିଗଲା । ମେଷପାଳକର ମେଣ୍ଢାପଲ ମଧ୍ୟରୁ ମେଣ୍ଢୀଟିଏ ଜନଗହଳି ଭେଦୀ ମେ ମେ ହୋଇ ଉଦ୍ୟାନ ଆଡ଼କୁ ମାଡ଼ି ଆସିବା ବେଳେ ବନପହିଲିମାନ୍ ମେଣ୍ଢୀଟିକୁ ଆକଟ କରୁଥାଏ, ଆଉ ମେଣ୍ଢାଦଳ କିଏ ଆଣିଲା କହି ଅକଥ୍ୟ ଭଷାରେ ଗାଳି ଦେଉଥାଏ । ମେଣ୍ଢୀ କିନ୍ତୁ ମେ ମେ କରି ସେଇ ମେଷପୁରୁଷଥିବା ଦିଗକୁ ଯିବାକୁ ବାରମ୍ବାର ଚେଷ୍ଟା କରୁଥାଏ ।

ମେଷପାଳକ ଗାଳିଶୁଣି ମେଣ୍ଢୀକୁ ଦୁଇବେତ ଦେଇ ଉଠାଇ ଆଣିଲା ଜନଗହଳି ବାହାରକୁ । ଏ ମଧ୍ୟରେ କିନ୍ତୁ ଉଦ୍ୟାନ ମଧ୍ୟରୁ ଶୁଭିଲା ମେଷ-ପୁରୁଷଙ୍କର ଆବାଜ 'ମେ ମେ' 'ମେ' । ତାଙ୍କୁ ବାଧାଦେବ କିଏ । ଜନଗହଳି ଭେଦକରି ମେଷପୁରୁଷ ଝପଟି ଆସିଲେ ବାହାରକୁ । ବାହାରେ ମେଣ୍ଢୀ ପାଖକୁ ଦଉଡ଼ିଗଲେ ଡ଼େଇଁ ଡ଼େଇଁ । ମେଣ୍ଢୀ ଆଗ୍ରହରେ ଗୁଟିପକାଉଥାଏ ମେଷପୁରୁଷଙ୍କର ଶରୀର । ମେଷପୁରୁଷ, ଅମୃତ ଆଗ୍ରହରେ ଶୁଙ୍ଘିବାକୁ ଲାଗିଲେ ମେଣ୍ଢୀର ପଛ ।

ଶହଶହ ଭକ୍ତ ଦେଖୁଥାନ୍ତି ଏଇ ଦୃଶ୍ୟ କିଏ ବାରଣ କରିବ, ତାଙ୍କୁ । ଏପୁଣି କି ଗୋଟାଏ ଲୀଳା କିଏ ଭେଦିବ ସେଇ ରହସ୍ୟ । ଘଡ଼ିଏଯାଏଁ ମେଷ-ପୁରୁଷ ପାନକଲେ ପଛ । ତାପରେ ମୁହଁଟେକି ନାଚିଲେ କୁଦିଲେ କିନ୍ତୁ ମେଣ୍ଢୀ ନିକଟ ଛାଡ଼ିବାକୁ ନାରଜ ।

ଦିପହର ଭୋଗପାଇଁ ମେଷପୁରୁଷଙ୍କର ଦିବ୍ୟ ବ୍ୟଞ୍ଜନ ଓ ପୂଜା ଅର୍ଚ୍ଚନା ପ୍ରସ୍ତୁତ । ପୂଜାରୀ ନିଜେ ଆସି ମେଷପୁରୁଷଙ୍କୁ ଡ଼ାକିଲେ–

"ନବଦୂର୍ବା ବିଲ୍ୱପତ୍ରଂ ସମାହାରଂ ସଂଯୋଗାୟ
କାଳାନ୍ତରେ ମେଷଋଷି ଇଶ୍ୱରମାହଂ ସମର୍ପୟାମି" ।

ଅତ୍ୟନ୍ତ ଉଲ୍ଲସିତ ମେଷପୁରୁଷ କିନ୍ତୁ ମେଣ୍ଢୀକୋଳ ଛାଡ଼ିବାକୁ ନାରାଜ ।

ବେଳ ଗଡ଼ିଯାଉଥାଏ । ଭକ୍ତଙ୍କର ଉତ୍‌କଣ୍ଠାକୁ ଖାତିର୍ କରି, ପୂଜାରୀ ମେଷପୁରୁଷଙ୍କୁ କୁଣ୍ଡାଇ ଧରିଲେ । ମେଣ୍ଢୀ କିନ୍ତୁ ପୂଜାରୀଙ୍କୁ କୁଦିପଡ଼ି ବାଧା ଦେଉଥାଏ । ମେଷପୁରୁଷଙ୍କୁ ପୂଜାରୀ ବୋହିନେଲେ । ମନ୍ଦିର ମଧ୍ୟରେ ବାଜି-ଉଠିଘ ଘଣ୍ଟା, ଢୋଲ, ମାଦଳ, ମୃଦଙ୍ଗ, ହୁଳହୁଳି, ଶଙ୍ଖ ଓ ହରିବୋଲ । ଗାଁଆ ଦାଣ୍ଡ ହୋଇଗଲା ନିଶୁନ । କେବଳ ରହିଲୁ ମୁଁ, ମେଷପାଳକ ଏବଂ ମେଣ୍ଢାଦଳ ।

ମେଷପାଳକ ଅମାନିଆ ମେଣ୍ଢୀକୁ କାଖେଇ ବିରକ୍ତିରେ ମେଣ୍ଢାପଲକୁ ଆଡ଼େଇ ମୋତେ ଡାକିଲା । ଆମେ ନିରବରେ ଫେରିଲୁ । କିଛିକ୍ଷଣପରେ ମୁଁ ପଚାରିଲି "ଭାଇ ! ଏଇ ମେଣ୍ଢୀଟି ଏମିତି ବୋବାଉଛି କିଆଁ ?"

ମେଷପାଳକ ଏଥର ମୋତେ ପୁଣିଥରେ ଭଲକରି ନିଘାକରି କହିଲା "ବାବୁ ତୁମେ କ'ଣ ବିଶ୍ୱାସ କରିବ ମୋ କଥାକୁ । କେତେ ପାଠ ପଢ଼ିଛ । ପାଠ ପଢ଼ାଉଛ, ମୁଁ ତ ମୁର୍ଖଲୋକ କହିବାକୁ ସାହାସ ହେଉନାହିଁ" ।

ମୁଁ କହିଲି କହୁନ, ଏଥିରେ କ'ଣ ଅଛି ? ମେଷପାଳକ ଆରମ୍ଭ କଲା "ବୁଝିଲ ବାବୁ ମାସକ ତଳର କଥା, ଏଇ ମେଣ୍ଢୀଟି ବଡ଼ ଗର୍ଭକଷ୍ଟ ପାଉଥାଏ । ମୁଁ ସେଇ ପାହାଡ଼ ଶାଳବଣରେ ଗୋଟାଏ ଗଛମୂଳରେ ତାକୁ ଜଗି ରହିଥାଏଁ । ଗଛ ଛାଇରେ କେତେବେଳେ ମୋତେ ନିଦ ଆସିଯାଇଥାଏ । ହଠାତ୍ ମେଣ୍ଢୀର ବିକଳ 'ମେ' 'ମେ' ରଡ଼ିରେ ମୁଁ ଚମକି ଉଠିଲି । ଦେଖିଲି, ଗୋଟାଏ ବଡ଼ ତେନ୍ତୁଳି ଗଛ ଆଡୁ ମେଣ୍ଢୀ ଚମକି ଆସୁଛି ମୋ ପାଖକୁ । ପାଖକୁ ଅସି ତିନିଟି ଛୁଆ ପ୍ରସବ କରିଦେଲା । ମୋ ମନ ଖଟା ହୋଇଗଲା, କାରଣ ପ୍ରତିବର୍ଷ ମେଣ୍ଢୀଟି ଗ୍ରରିଟି ଲେଖାଏଁ ଛୁଆଦିଏ । ଗୋଟାଏ ଛୁଆ କମ୍ । ମନ ଦୁଃଖରେ ସେଦିନ ଘରକୁ ଫେରିଲି ।

ତହିଁ ଆରଦିନ ଦୈବାତ୍ ସେଇ ତେନ୍ତୁଳି ଗଛ ପାଖକୁ କଇଁଆ ପାଇଁ ଯାଇଥିଲି । ଗଛତଳେ ଦେଖିଲି ଗୋଟାଏ ମହାବଳ ବାଘୁଣୀ ମରିପଡ଼ିଛି, ଗନ୍ଧ ଆସିଲାଣି । ତାର ମୁଣ୍ଡ ପଛରେ ଗୁଳି ବାଜିଥାଏ । ତରବରରେ ତାର ଛାଲ-ଉତାରି, ନଖ ଆଉ ଛାଲକୁ ଦୁଇଶହରେ ସହରରେ ଏବେ ବିକିଛି ।

ବାବୁ, ମୋର ଅନୁମାନ, ମୋ ମେଣ୍ଢାଟି ସେଦିନ ଗର୍ଭକଷ୍ଟରେ ଜାଗା ବାରିବାରି ଯିବାବେଳେ, ବାଡଲାରେ ମଲ ବାଘୁଣୀ ଉପରେ ଝୁଣ୍ଟି ଯାଇଛି । ଛାନିଅରେ ତାର ପ୍ରଥମ ଛୁଆ ସେଇଟିହିଁ ଖସିପଡ଼ିଛି । ଛାଡ଼ନ୍ତୁ ବାବୁ, ମୋର ବି ଲୋଭନାହିଁ ଛୁଆକୁ, କିନ୍ତୁ ଏଇ ମେଣ୍ଢୀ କଥାହିଁ ଭାବୁଛି, ବିଗରୀ ହେଲେ କଥାକହି ପାରୁଥାଆନ୍ତା" ।

ମେଷପାଳକ ବାଷ୍ପାକୁଳ ହୋଇ ପଡୁଥିଲା । ମୁଁ ଏଥର ମାଆ ସରସ୍ୱତୀଙ୍କୁ ଡ଼ାକିଲି "ମାଆ, ମେଣ୍ଢୀ ମଥାର ବ୍ୟଥା ବୁଝିବା ପାଇଁ ଏଇ କବି କଥାରେ ସାହାଯ୍ୟ କର ମାଆ" ।



ପ୍ରଫେସର ଡାକ୍ତର କମଳେଶଙ୍କ ଡାକରା ପାଇ ମୁଁ ଯଥା ସମୟରେ ତାଙ୍କ ଗ୍ରେମହଲ ଘରେ ସାକ୍ଷାତ କଲି । ମୁଁ ନମସ୍କାର ଜଣାଇବା ବେଳେ, ସେ ସାତଟି ବୋତଲରେ ଲେବଲ୍ ମାରୁଥିଲେ "ବି ପ୍ଲସ୍ ପୋଜିଟିଭ" । ମୋତେ ଦେଖିଲାକ୍ଷଣି କହିଲେ, ଡାକ୍ତର କୁମାର୍ ! ତମେ ଆସିବା ଆଗରୁ ହିଁ ରୋଗୀଟି ମରିଗଲା । ବ୍ୟସ୍ତହେବାର କିଛିନାହିଁ, ଆପଣ ଡେଥ୍ ସାର୍ଟିଫିକେଟ୍ ଦସ୍ତଖତ୍ କରିଦିଅନ୍ତୁ, ଟେବୁଲ୍‌ରେ ରଖାହୋଇଛି ।

ମୁଁ ଟେବୁଲ ଉପର ସାର୍ଟିଫିକେଟ୍ ପଢିଲି, ଏବଂ କୋଠରୀର ଗୋଟିଏ କ'ଣରେ ଷ୍ଟ୍ରେଚର ଉପରେ ଥିବା ରୋଗୀ ଉପରୁ, ଧଳା ଚଦରଟି ଖୋଲିଦେଲି ଏବଂ ଚିତ୍କାର କଲି "ସାର୍ ! ଲୋକଟା ବଞ୍ଚିଛି ସାର୍, ବଞ୍ଚିଛି ।"

ମୋର ଚିତ୍କାର ଶୁଣି ଡ଼ାକ୍ତର କମଳେଶ ବିରକ୍ତ ହୋଇ କହିଲେ "ଡ଼ାକ୍ତର କୁମାର, ମରିନାହିଁ ତ ଏମିତି ଚିଲଉଛ କିଆଁ ? ଏଇନା ମରିଯିବ । ଏଇଟି ତମର ସେୟାର୍ କୋଡ଼ିଏହଜାର ଟଙ୍କା । ଲୋକଟା ଦଣ୍ଟାଣରେ ପଡ଼ିଗଲା, ହାତଟା ଫାଟିଯାଇ ଥିଲା, ମୋ ପାଖକୁ ଆସିଲା । ଲୋକଟି ଗୁପ୍‌ଚୁପ୍ ବିକ୍ରି କରେ ଠେଲା ଗାଡ଼ିରେ । ପରୀକ୍ଷାରୁ ଜାଣିଲି, ଲୋକଟିର ରକ୍ତ ବିପ୍ଲସ୍ ପୋଜିଟିଭ୍ । ତମେ ଜାଣିଛ ଏହି ରକ୍ତ ପାଇଁ ଆମେ କେତେ ବିଜ୍ଞାପନ ଦେଲୁ, ମାତ୍ର ତିନିବୋତଲ ମିଳିଛି । ଅତି କମ୍‌ରେ ଆଉ ଚାରିବୋତଲ ହେଲେ ଯାଇ ମନ୍ତ୍ରୀଙ୍କର କୋଇଁର ଅପରେସନ୍ ସମ୍ଭବ । ଛାଡ଼ ସେକଥା ତମର ପି.ଜି.ସିଟ୍ ପାଇଁ ମୁଁ ସବୁ ବ୍ୟବସ୍ଥା କରିଛି । ଯାଅ କୁମାର, ପଇସାନେଇ ଘରକୁ ଯାଅ ।"

ପ୍ରଫେସରଙ୍କ ମହିଁରେ ସେଦିନ ମେଞ୍ଚାଏ ଛେପ ଫୋପାଡ଼ି, ବେଜିଟ୍ କରିବାର ପରିଣାମ ଅନୁମାନ ଅନୁପାତରେ ଫଳିଲା ।

କିଛିଦିନ ପରେ ହିଁ, ଡାକ୍ତର କମଳେଶ ହେଲେ ରାଜ୍ୟର ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ, ଏବଂ ମୋର ବଦଳି ହେଲା, କଳାହାଣ୍ଡି, ଥଆମୂଳ ରାମ୍‌ପୁର ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ।

ବର୍ଷରେ ଥୁଆମୁଲ ରମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପାଇଁ ଏହା ଥିଲ ସପ୍ତମ ବଦଳି । ତା ଆଗରୁ ଛଅଜଣ, ମାସାଧିକ କାଳ ଛୁଟିରେ ରହିବା ପରେ, ପୁନର୍ବାର କଟକ, ଭୁବନେଶ୍ୱରରେ ଥଇଥାନ ହେଲେ । ମୋ ପକ୍ଷରେ କିନ୍ତୁ ଏଇ ଘଟଣା ପରେ ବଦଳିକୁ ଉପେକ୍ଷା କରିବା ସମ୍ଭବ ନଥିଲ । ମୁଁ ମଧ୍ୟ ସହରର କୁଟିଳ କପଟାଗ୍ରରକୁ ଏମିତି ଘୃଣା କରୁଥିଲି ଯେ, ଏହି ବନବାସ ଆଦେଶକୁ ଆଗ୍ରହରେ ଗ୍ରହଣ କରିନେଲି ।

କଳାହାଣ୍ଡି କହିଲେ ମୁଁ ବୁଝିଥିଲି, ବାଘ ଭଲୁର ପାହାଡ଼, କଳା କଳା ଭଲଗ୍ନ ଆଦିବାସୀଙ୍କର ଆତଯାତ ଅନ୍ଧାର ଉପତ୍ୟକା ।

ସେଠିକି ଯିବାପରେ, କଳାହାଣ୍ଡିକୁ ଏକ ଶଂକିତ ଆତ୍ମୀୟତାରେ ଚିହ୍ନିବାକୁ ଚେଷ୍ଟାକଲି । ପ୍ରଥମେ ବ୍ଲକ୍‌ର ବି.ଡ଼ି.ଓ, କେଇଟି କଟକୀ କିରଣୀ ଆଉ କମ୍ପାଉଣ୍ଡର୍ ବାବୁଙ୍କ ଭଷା ହିଁ ବୁଝିପାରୁଥିଲି । ସେମାନଙ୍କ ମାଧ୍ୟମରେ ହିଁ ବାହାର ଲେକଙ୍କ ସହ ଯୋଗାଯୋଗ କରୁଥିଲି ।

ଡାକ୍ତରଖାନାରେ କେବେହେଁ ଭିଡ଼ ନଥିଲ । ସାଧାରଣତଃ ଦୀର୍ଘକାଳ ଅନାହାରରେ ରକ୍ତଶୂନ୍ୟ ଲେକଙ୍କୁ, ମୃତ୍ୟୁ ଆଗରୁ ଡାକ୍ତରଖାନା ଅଣା ହେଉଥାଏ । ତାଙ୍କର ଔଷଧ ଅପେକ୍ଷା ଭତ ଜରୁରୀ ଏବଂ ବୁଭୁକ୍ଷୁ ଆଦିବାସୀଙ୍କୁ ଅନ୍ନ ଯୋଗାଣ ମୋର ସାଧ୍ୟ ବାହାରେ ।

ଡାକ୍ତରଖାନାରେ ମରହଟ୍ଟା ଅମଳର ଜଙ୍କ ଲଗିଯାଇଥିବା ଅସ୍ତ୍ରୋପଚାର ଉପକରଣ । ସେ ମଧ୍ୟ କୌଣସି ଜଣେ ମହାମାନ୍ୟ ପାଦ୍ରୀଙ୍କ ଦାନ ଯୋଗୁ ଗଚ୍ଛିତ ଥିଲ । ବ୍ୟାଣ୍ଡେଜ୍ କନା, ଆଇଓଡ଼ିନ୍, ପାଥେଡ୍ରିନ୍, ମେଲେରିଆ ବଟିକା ବ୍ୟତିରେକ, ଆଉ ସବୁ ଔଷଧ ଦୁର୍ଲଭ ।

ଦିନକର ଘଟଣା, ମୁଁ ରତିରେ ଲଣ୍ଠନ ଜାଳି, ବହିଟିଏ ପଢୁଥାଏଁ । ଘରଭିତରକୁ ପଶି ଆସିଲ, କୁଟିଆ ରମଣୀଟିଏ । ଶୈଶବ କାଠରେ ତିଆରି କଣ୍ଢେଇଟେ ଭଳି ତାର ଶରୀର । ଅଣ୍ଟାରେ କସ୍ତା କନାର ଘେର । ହାତରେ ବେକରେ, କାନରେ ଓ ନାକରେ, ବିଭିନ୍ନ ରଙ୍ଗବେରଙ୍ଗୀର କଣ୍ଠୀମାଳାର ଅଳଙ୍କାର ।

ଯୁବତୀ ମୋତେ ଦେଖିଲାକ୍ଷଣି, ଦିହରୁ ଖଗଲ, ବଂଦରିଆ, କତ୍‌ରିଆ ସବୁ କାଢ଼ି, ମୋ ଗୋଡତଳେ ଥୋଇ ମୋର ପାଦଧରି କାନ୍ଦି କାନ୍ଦି, ଯାହା କହିଲା, ତାହାର ଅର୍ଥହେବ "ଡାକ୍ତର ବାବୁ ! ମୋ ସ୍ୱାମୀ ମୃତ୍ୟୁ ମୁହଁରେ, ତାକୁ ରକ୍ଷାକର, ମୁଁ ଗରିବ, ପଇସା ନାହିଁ, ଏଇସବୁ ନିଅ ।"

ମୁଁ ଚମକିପଡ଼ି, ବାହାରକୁ ଆସି କମ୍ପାଉଣ୍ଡର୍ ବାବୁଙ୍କୁ ଡାକିଲି । ତାଙ୍କସହ ଡାକ୍ତରଖାନା ଯାଇ ଦେଖିଲି, ପାଞ୍ଚ ଛଅଜଣ କୁଟିଆ ଜଣେ ରୋଗୀକୁ ହାତଗୋଡ଼ ବାନ୍ଧି, ଦୁଇଟି ବାଉଁଶ ମଝିରେ ବୋହି ଆଣିଛନ୍ତି । ଲୋକଟିର ଖପୁରୀ ଫାଟି, ଅଜସ୍ର ରକ୍ତ ପ୍ରବାହ ଚାଲିଥାଏ । କମ୍ପାଉଣ୍ଡର୍ ବାବୁ ତାଙ୍କସହ କଥାବାର୍ତ୍ତା କରି ବୁଝିଲେ, ଲୋକଟି ତା'ର ନବବିବାହିତା ସ୍ତ୍ରୀସହ ପ୍ରତ୍ୟୁଷରୁ ମହୁଲ ଗୋଟାଇବା ପାଇଁ ଯାଇଥିଲା । ବଦ୍‌ମାସ୍ ଭାଲୁଦଳଙ୍କର ହାବୁଡ଼ରେ ପଡ଼ିଗଲା, ଦୁଇତିନିକୁ ଧନୁଶରରେ ମାରିଦେଲା, ଘାଏଲା ଭାଲୁ ମଧ୍ୟରୁ ଗୋଟାଏ ଲୋକଟିର ଖପୁରି ଚମଡ଼ା ଟାଣିନେଲା । ବିଚାରୀ ସ୍ତ୍ରୀଲୋକଟି ପ୍ରଥମେ ଗାଁକୁ ବୋହିନେଲା ଅଚେତ ସ୍ୱାମୀକୁ ।

ଗାଁର ଜାନୀ ନିଦାନ କରିଥିଲା ଯେ, ଲୋକଟି ନୂଆଖାଇ ଆଗରୁ କଖାରୁ ଫୁଲ ଛିଣ୍ଡାଇଛି, ତେଣୁ ଏଇ ବିପତ୍ତି । ତେବେ ଧରଣୀ-ଶୀଳା, କୁକୁଡ଼ା ବା ଛେଳିର ରକ୍ତ ପାଇଲେ, ଲୋକଟି ଭଲ ହୋଇଯିବ । ଯଥାରୀତି, କୁକୁଡ଼ା ଓ ଛେଳିର ରକ୍ତ ପାଇଲା ପରେ ମଧ୍ୟ ଲୋକଟି ଚେତା ଫେରିପାଇ ନଥିଲା । ତାପରେ ସମସ୍ତେ ଏଇଠି ।

ମୁଁ ସଙ୍ଗେ ସଙ୍ଗେ ଲୋକଟିର ରକ୍ତସ୍ରାବ ବନ୍ଦ ହେବାର ବ୍ୟବସ୍ଥା କଲି । ଯନ୍ତ୍ରଣା ଲାଘବପାଇଁ ଗୋଟିଏ ଇଞ୍ଜେକ୍‌ସନ୍ ଫୋଡ଼ି, ରୋଗୀର ରକ୍ତ ସହ, ଅନ୍ୟ କୁଟିଆ-ମାନଙ୍କର ରକ୍ତ ମଧ୍ୟ ପରୀକ୍ଷା ପାଇଁ ଆଦେଶ ଦେଲି । ଲୋକଟିକୁ ରକ୍ତ ଦେବା ନିହାତି ଜରୁରୀ ଥିଲା ।

କମ୍ପାଉଣ୍ଡର ବାବୁ, ଲୋକଟିର ବ୍ଲଡ଼ ଗ୍ରୁପ୍ ପରୀକ୍ଷା କରି କହିଲେ, ବି, ପଜିଟିଭ୍ ସାର୍ ।

ଯୁବତୀଟି, ଆପଣା ସ୍ୱାମୀର ଅଚେତ ଶରୀର ପାଖରେ ବସି, ଗୋଟାଏ ତମ୍ବାରୁ ପାଣି ଠୋପାଏ ଠୋପାଏ ହାତରେ ଆଣି ପାଟିରେ ଦେଉଥାଏ । କମ୍ପାଉଣ୍ଡର ବାବୁ, ତା'ର ଆଙ୍ଗୁଠିରେ ଛୁଞ୍ଚି ଫୋଡ଼ି, ସ୍ଲାଇଡ୍‌ରେ ରକ୍ତ ଟୋପାଏ ସଂଗ୍ରହ କେଲେ, ପଗ୍ଭରିଲ "ଏ ରକ୍ତ କାହିଁକି ?"

କମ୍ପାଉଣ୍ଡର୍ ବାବୁ କହିଲେ, ସ୍ୱାମୀ ବଞ୍ଚିବା ପାଇଁ ରକ୍ତ ଦରକାର !"

ସ୍ତ୍ରୀ ଲୋକଟି କହିଲ "କ'ଣ ମଣିଷ ରକ୍ତ ! କେତେ ଦରକାର ?"

କମ୍ପାଉଣ୍ଡର୍ ବାବୁ ତାର ଆଙ୍ଗୁଠିରୁ ରକ୍ତ ନେଇ କହିଲେ "ଏଇ ତୁମ୍ଭାରେ ତୁମ୍ଭାଏ ମଣିଷ ରକ୍ତ ଗ୍ଭହି, ଅପେକ୍ଷାକର ମୁଁ ପରୀକ୍ଷା କରେଁ ।

କମ୍ପାଉଣ୍ଡର୍ ବାବୁଙ୍କ କଥାଶୁଣି, ସ୍ତ୍ରୀଲୋକଟି, ରକ୍ତାକ୍ତ ସ୍ୱାମୀଙ୍କୁ ଘଡ଼ିଏ କାବୁଡ଼ି ଧରିଲ । ଆଖିରୁ ଧାର ଧାର ଲୁହ ବହିଯାଉଥାଏ । ମୁଁ ଦୂରରୁ ଦେଖିଲି, ଲଣ୍ଠନ୍ ଆଲୁଅରେ ତାର ଲୁହଧାର, କୃଷ୍ଣକାୟାରେ ଚକ୍‌ଚକ୍ ମୋତିର ହାରଭଳି ମନେ ହେଉଥାଏ । ମୋ ଆଡ଼କୁ ଅତି କରୁଣ ଗ୍ଭହାଣୀରେ ଗ୍ଭହିଁ କହିଲ "ସତକଥା ମିତେ ! ଇତ ବଡ଼ ବିପତି, ଚେରେ ଟିଙ୍ଗୁଲ୍ ରୁଧିରନେଇ ନେଇଯାଏ, ମୁମୂର୍ଷୁ ରୁଧିର୍‌ନେ ଏକା ଏଇ ଥମ୍‌ବା ।"

ଏହାକହି ସେ ଉଠିପଡ଼ିଲ ଏବଂ ତୁମ୍ଭା ସହ ଡାକ୍ତରଖାନାର ବାହାରକୁ ଗ୍ଭଲିଗଲ । ଦୀର୍ଘ ପାହାଡଘେରା ଉପତ୍ୟକାଟି ଅମାବାସ୍ୟା ଯୋଗୁଁ ଆହୁରି ଗାଢ ଅନ୍ଧାର ହୋଇଯାଇଥାଏ ।

କିଛି ସମୟ ପରେ ସ୍ତ୍ରୀଲୋକଟି ପୁନର୍ବାର ଡାକ୍ତରଖାନା କୋଠରୀ ଭିତରକୁ ପଶିଆସିଲ । ମୁଁ ତାକୁ ଦେଖିଲକ୍ଷଣି, ଚିତ୍କାର କରି ତା ପାଖକୁ ଦଉଡ଼ିଗଲି । ଯୁବତୀଟି, ଗୋଟାଏ ତୀକ୍ଷ୍ଣ ଶରରେ ଆପଣା ଛାତିକୁ ଭୁଷି ଦେଇଥାଏ । ସେଇ ଶରବିଦ୍ଧ ବକ୍ଷରୁ ପିଚ୍ ପିଚ୍ ରକ୍ତ ନିଗିଡ଼ି ପଡୁଥାଏ । ଗୋଟାଏ ହାତରେ ତୁମ୍ଭା ମୁହଁକୁ ଛାତିରେ ଯାକି, ରକ୍ତଧାରକୁ ସଂଗ୍ରହ କରୁଥାଏ । ମୁଁ ନିକଟ ହେବାକ୍ଷଣି, ଆଉଟିକିଏ ଜୋର୍‌ରେ, ତୀରଟିକୁ, ବାଆଁ ହାତରେ ଗ୍ଭପ ଦେଇ, ରକ୍ତପୂର୍ଣ୍ଣ ତୁମ୍ଭାକୁ, ଡାହାଣ ହାତରେ ବଢ଼ାଇଦେଇ କହିଲ, 'ନେଏରେ ମିତେ, ଡାକ୍ତର୍ ମିତେ ନେ,

ଏତିକି କାଢ଼ିଛଁ, ଆଉ ଯେତେ ଅଛେ କାଢ଼ିନେ, ଧଙ୍ଗର ମୋର ବଞ୍ଚିଯାଉ, ଆର୍ ଗୁଟେ, ଧାଙ୍ଗ୍‌ରୀ ତାକେ ମିଲ୍‌ବା...” ।

ଆଉ ବେଶୀ କହିବା ଆଗରୁ ସ୍ତ୍ରୀଲୋକଟି ମୋ କୋଳରେ ଲୋଟି ପଡ଼ିଲା ।

ସଙ୍ଗେ ସଙ୍ଗେ ସ୍ତ୍ରୀଟିର ଚିକିତ୍ସା ପ୍ରଥମେ ଆରମ୍ଭ କଲି । ଦିହିଁଙ୍କୁ ରକ୍ତ ଦରକାର । କମାଣ୍ଡର୍ ବାବୁଙ୍କୁ କହିଲି ମୋ ଠୁଁ ରକ୍ତ ଦିହିଙ୍କୁ ଦେବାପାଇଁ । କମାଣ୍ଡର୍ ପ୍ରଥମେ ରାଜିହେଲେ ନାହିଁ । ମୁଁ କହିଲି “ମୋର ବି, ପଜିଟିଭ୍ ରକ୍ତ । ଦୁର୍ଲ୍ଲଭ । କମାଣ୍ଡର୍ ! ଏହା ମୋର ଆଦେଶ, ଦିହିଁଙ୍କୁ ଅନ୍ତତଃ ଦରକାରୀ ପରିମାଣ ରକ୍ତ ମୋଠୁ ନେଇଯାଅ” ।

ତାହାହିଁ ହେଲା । ଦୀର୍ଘ ପନ୍ଦରଦିନ ପରେ ସ୍ୱାମୀ ସ୍ତ୍ରୀ ଦିହେଁ ଭଲ ହୋଇଗଲେ ଯେଉଁଦିନ ଡାକ୍ତରଖାନାରୁ ମୁକ୍ତ ହେଲେ ସଂଧ୍ୟାରେ ଦିହେଁ ମୋ ଘରକୁ ଆସିଥିଲେ । ଦିହେଁ ମୋ ଗୋଡ଼ତଳେ ବସି ବହେ କାନ୍ଦିଲେ । କିଛି କଥା କହୁ ନଥିଲେ । ମୁଁ ଆପଣା ଲୁହକୁ, ରୋକିବାର ଚେଷ୍ଟା କରୁଥିଲି । ସ୍ତ୍ରୀଲୋକଟି କେଶରେ ପିନ୍ଧିଥିବା ମନ୍ଦିରକାୟ ଶୁଭ୍ର ସୁନ୍ଦର ରୂପାର ଅଳଙ୍କାରଟାଏ । ସେଇ ଅଳଙ୍କାରଟି ଚଉଁରିମୁଣ୍ଡି । କୁଟିଆଙ୍କର ବଡ଼ ପ୍ରିୟ, ସାଧାରଣତଃ ବିବାହଦିନ ବର ତରଫରୁ କନ୍ୟା ଗଉରେ ଏହା ଉପହାର ଭବରେ ଦିଆଯାଏ ।

ଗମ୍ଭୀର ପରିବେଶ ମଝିରେ ସ୍ତ୍ରୀଲୋକଟି ଆପଣା ଗଉରୁ ଚଉଁରିମୁଣ୍ଡିକୁ ହାତରେ ଓଟାରି ମୋର ଦୁଇ ହାତରେ, ଥୋଇ କାନ୍ଦି କାନ୍ଦି କହିଲା ।” ଡାକ୍ତର ମିତେ । ମୁଁ କି ଟଙ୍କା ଦେବି, ମୁଁଇ କର୍ଲ ପାଟର କେତର୍କ ଜାନୀର ଟୁମକଲ୍, କସ୍‌ନା କୁଟିଆର କନିଆ, ମତେ ତୁଇ ରକତ୍ ଦେଲୁ, ମ ଜୀବନ୍ ଦେଲୁ, ମର୍ ଧଙ୍ଗର ଦେଲୁ, ମୁଇଁ ଗରିବ୍ ନୋକ୍ । ରକତର କାଏଁ ମୂଲ୍ ଦେମି, ତୁଇ ମର୍ ମିତ, ମିତଣିର ଚିହ୍ନ ଗୁଟେ ରଖ୍ । ଇ, ଚଅରୀମୁଣ୍ଡି ନେ, ତର୍ କନିଆ ଆସ୍‌ଲେ, ତାର ମୁଣ୍ଡେ, ଇଟାକେ ଦେବୁ, କହେବୁ, କାର୍ଲ ପାଟ୍‌ର କୁଟେନ୍ ବହେନ୍, ଇଟା ଦେଇଛେ ।”

ଆଜିକି ଅନେକ ବର୍ଷର ଏଇ ଘଟଣା । ଅନେକ ସହର ବୁଲିଛି । ବାପା ମାଆ ଅନେକ ଠିକଣା ଆଣିଛନ୍ତି । ଅନେକ ଯୁବତୀ ଦେଖିଛି । କିନ୍ତୁ ଏଯାଏ ପାଇନି, କୁଟିଆ ରମଣୀର ଉପହାର ପାଇଁ ଯୋଗ୍ୟା ଶିକ୍ଷିତା ଯୁବତୀଟିଏ, ଯାହା ଗଉରେ, ଚଉଁରିମୁଣ୍ଡି ଦେଇପାରିବି । ଏଯାଏଁ ପାଇନି, କନ୍ୟାଟିଏ ଯାହାକୁ ବୁଝାଇ କହିବି, ବରକନ୍ୟାର ସମ୍ପର୍କର କାହାଣୀ, କୁଟିଆ ରମଣୀର ରକ୍ତ ସମ୍ପର୍କୀୟର କାହାଣୀ ।



ପୁରୀ ସହରକୁ ବିଦେଶରୁ ଅନେକ ପର୍ଯ୍ୟଟକ ଆସନ୍ତି । ବିଶେଷତଃ ମନୋରମ ବିସ୍ତୀର୍ଣ୍ଣ ବେଳାଭୂମିରେ ସମୁଦ୍ର ସ୍ନାତ ବିଦେଶୀ ସାହେବମାନଙ୍କର ଏକ ଦୁର୍ଲଭ ସନ୍ଧକ । ସେଭଳି ଜଣେ ବିତ୍ତଶାଳୀ ଆମେରିକୀୟ ପର୍ଯ୍ୟଟକଙ୍କ ସମୁଦ୍ର ସ୍ନାନର ଏହି କାହାଣୀ । କାହାଣୀ କହିଲେ ଠିକ୍ ହେବନାହିଁ, ଏହା ଏକ ସମ୍ପୂର୍ଣ୍ଣ ସତ୍ୟଘଟଣା । ବ୍ୟକ୍ତିଙ୍କ ପ୍ରକୃତ ନାମ ତାଙ୍କ ସମ୍ମାନାର୍ଥେ ଗୋପନ ରଖା ହୋଇଛି ।

ମିଃ ସ୍ମିଥ୍ଙ୍କ ବୟସ ପଚାଶ ସରିକି ହେବ । ଫିଲାଡେଲ୍‌ଫିଆର ଅଧିବାସୀ । ଆମେରିକୀୟ ମାନଦଣ୍ଡରେ ଜଣେ ବିତ୍ତଶାଳୀ ଏବଂ ଖ୍ୟାତନାମା ଶିଳ୍ପପତି । ତାଙ୍କର ନିଜସ୍ୱ ଯନ୍ତ୍ର ଜାହାଜ ତିଆରି କାରଖାନାଟିଏ ଅଛି । ପୁରୀରେ ଆସି ଗୋଟାଏ ବିଳାସମୟ ହୋଟେଲ୍‌ରେ ରହୁଥାଆନ୍ତି । ଦିନେ ମିଃ ସ୍ମିଥ୍ ଏକା ଏକା ସମୁଦ୍ର ସ୍ନାନ ପାଇଁ ବାହାରିଲେ । ଆଗରୁ ନୋଳିଆମାନଙ୍କ ସାହାଯ୍ୟରେ ମଟର ଟ୍ୟୁବ୍ ନେଇ କେଇଥର ସମୁଦ୍ର ସ୍ନାନ କରିଛନ୍ତି । ଏଥର କୌଣସି ନୋଳିଆ ସଙ୍ଗରେ ନ ନେଇ, ମିଃ ସ୍ମିଥ୍ ଏକା ଏକା ବିରାଟ ଟ୍ୟୁବ୍‌କୁ ଟେକି ସମୁଦ୍ରକୁ ଲମ୍ଫ ଦେଲେ । କିଛି ସମୟ ଲହଡ଼ି ସହ ନାଚକୁଦ ପରେ କୌଶଳ କ୍ରମେ ଲହଡ଼ି ପାର ହୋଇ ଗଭୀର ସମୁଦ୍ରକୁ ଆଗେଇଲେ । ଟ୍ୟୁବ୍ ଉପରେ ଅନନ୍ତ ଶୟନ ଆସନରେ ଗୋଟାଏ ପଟକୁ ଗୋଡ଼ ଦୁଇଟି ଏବଂ ଅନ୍ୟ ପଟରେ ମୁଣ୍ଡଥାପି, ତରଙ୍ଗାୟିତ ସମୁଦ୍ର ବୁକୁରେ ଆରାମ୍‌ରେ ଦୋହଲିବାକୁ ଲାଗିଲେ ।

ମିଃ ସ୍ମିଥ୍ ଚୁରୁଟ୍ ଖାଇବାକୁ ଖୁବ୍ ଭଲ ପାଆନ୍ତି । ତାଙ୍କ ଚୁରୁଟ୍ ଏବଂ ଲାଇଟର୍‌କୁ ଗୋଟାଏ ଟିକି ପଲିଥିନ୍ ମୁଣାରେ ଭର୍ତ୍ତି କରି, ଟ୍ୟୁବ୍ ଦିହରେ ସରୁ ସୂତାରେ ବାନ୍ଧି ଦେଇ ଥାଆନ୍ତି, କିଛି ସମୟ ଆରାମ୍‌ରେ ଭାସିବା ପରେ ସନ୍ତର୍ପଣରେ ଚୁରୁଟ୍ ଏବଂ ଲାଇଟର୍ ବାହାରକଲେ, ଚୁରୁଟ୍‌ରେ ନିଆଁ ଲଗାଇ ଫେର ମୁଣ୍ଡ ଥୋଇ ବିଶ୍ରାମ ନେଲେ । ବିଶ୍ୱର ବିଷାକ୍ତ ବଳୟର ସମ୍ପୂର୍ଣ୍ଣ ମୁକ୍ତ ମିଃ ସ୍ମିଥ୍ ଅନିର୍ବଚନୀୟ ଆନନ୍ଦରେ ଆତ୍ମହରା ହୋଇ ଉଠିଲେ । ମୃଦୁ ହିଲ୍ଲୋଳରେ କେଇ ବୁନ୍ଦା ସମୁଦ୍ର ଜଳ ଚୁରୁଟ୍ ଉପରେ ଚହଲି ପଡ଼ିବା ଯୋଗୁଁ ହଠାତ୍ ତାଙ୍କର ଧ୍ୟାନ ଭଗ୍ନ ହେଲା । ପୁଣିଥରେ ଲାଇଟର ନେଇ ଚୁରୁଟ୍‌ରେ ନିଆଁ ଲଗାଇବା ପାଇଁ

ଖୁବ୍ ସତର୍କରେ ଗୋଟାଏ କଡ଼କୁ ମୁହଁ ବଙ୍କେଇ, ଠିକ୍ ଟ୍ୟୁବ ଉପରେ ଲାଇଟରକୁ ଟିପିଲେ । ଦୁର୍ଭାଗ୍ୟ ହିଁ କୁହାଯିବ, ମିଃ ସ୍ମିଥ୍‌ଙ୍କ ହାତ ଟିକିଏ ଝାଙ୍କି ହେଲା ଏବଂ ଲାଇଟରରୁ ନିର୍ଗତ ଅଗ୍ନିଶିଖା ଟ୍ୟୁବ୍ ଦିହରେ ଏକ ଟିକି ରନ୍ଧ୍ର ସୃଷ୍ଟି କରିଦେଲା । ତତ୍‌କ୍ଷଣାତ୍ ସି ସି ସି ହୋଇ ଟ୍ୟୁବ୍‌ରୁ ବାୟୁ ନିର୍ଗତ ହେବାକୁ ଲାଗିଲା ।

ମିଃ ସ୍ମିଥ୍ ଏଇ ଘଟଣାରେ ହଠାତ୍ ଅଧୈର୍ଯ୍ୟ ନ ହୋଇ, ଛିଦ୍ରକୁ ହାତ ପାପୁଲିରେ ଚାପି ରଖିବାକୁ ଚେଷ୍ଟାକଲେ । କିନ୍ତୁ କ୍ରମେ କ୍ରମେ ଛିଦ୍ରଟିର ଆକାରରେ ବୃଦ୍ଧି ଘଟିଲା । ମିଃ ସ୍ମିଥ୍ ଅନେକ ଚେଷ୍ଟା କରି ମଧ୍ୟ ସ୍ୱାଧୀନ ଭାବରେ ସନ୍ତରଣ ସକ୍ଷମ ହୋଇପାରୁ ନଥିଲେ । ପ୍ରଥମ ଥର ପାଇଁ ସେ ବେଳା-ଭୂମିକୁ ଅନେଇଲେ । କେଇକ୍ଷଣ ମଧ୍ୟରେ ନିରାପଦ ବେଳାଭୂମିରୁ ସେ ଯେ ଏତେ ଦୂରକୁ ଭାସି ଆସିଛନ୍ତି, ତାହା ତାଙ୍କର ସ୍ମରଣ ନଥିଲା । ଟ୍ୟୁବ୍‌ରୁ ପବନ ଯେଉଁ ପରିମାଣରେ ଖସୁଥାଏ ମିଃ ସ୍ମିଥ୍‌ଙ୍କର ଆଶଙ୍କା ଉଦ୍‌ବେଗ ଏବଂ ହୃତ୍‌କ୍ରିୟା ସେହି ପରିମାଣରେ ବୃଦ୍ଧି ପାଉଥାଏ । ମାତ୍ର କେଇ ମୂହୂର୍ତ୍ତ ଆଗରୁ ମସୃଣ ବଳୟରେ ବାହୁଛନ୍ଦି ମିଃ ସ୍ମିଥ୍ କୌଣସି ଏକ ପୂର୍ଣ୍ଣ ଯୌବନା ପ୍ରେୟସୀର ପ୍ରେମାଲିଙ୍ଗନ ପ୍ରାୟ ପ୍ରୀତି ଏବଂ ପ୍ରତ୍ୟୟର ଏକ ମଧୁର ଆଶ୍ଳେଷ ଅନୁଭବ କରୁଥିଲେ । ସେହି ବଳୟଟି ଏକ୍ଷଣି ପାପିୟସୀ ପିଶାଚିନୀର ପ୍ରତାରଣା ଭଳି ମନେ ହେଲା । ବଦ୍‌ମାସ୍ ଟ୍ୟୁବ୍‌ରୁ ସମସ୍ତ ଆସ୍ଥା ପରିହାର କରି ମିଃ ସ୍ମିଥ୍ ବେଳାଭୂମି ଦିଗରେ ଉଚ୍ଚ ସ୍ୱରରେ ଚିତ୍କାର କଲେ । ହେଲ୍‌ପ, ହେଲ୍‌ପ, ହେଲ୍‌ପ, ଆଇ ଏମ୍ ଡ୍ରାଇଂ, ଆଇ ଏମ୍ ଡ୍ରାଇଂ........"

କିନ୍ତୁ ସମୁଦ୍ର ଢେଉର ଭୟଙ୍କର ଗର୍ଜନ ଆଗରେ ତାଙ୍କ ଡାକର ବା ଶକ୍ତି କାହିଁ ଗର୍ଜନ ଭେଦ କରିବାକୁ । ପ୍ରାଣ ବିକଳରେ ମିଃ ସ୍ମିଥ୍ ଲକ୍ଷ୍ୟ କଲେ, ଦୂର ବେଳାଭୂମିର ଜୀବନ ଯାତ୍ରା ତାଙ୍କ ବିକଳ ଡ଼ାକରେ ଟିକିଏ ବିଚଳିତ ନୁହଁ । ଏ ଦିଗରେ ଟ୍ୟୁବଟି ସ୍ମିଥ୍‌ଙ୍କ ଅସ୍ଥିର କାତର ବାରମ୍ବାର ପରିକ୍ଷଣରେ ହଠାତ୍ ନିର୍ବାୟୁ ହୋଇ ନିମ୍ନଗାମୀ ହେବାକୁ ଆରମ୍ଭ କଲା । ସମଗ୍ର ଟ୍ୟୁବ୍‌କୁ ଜାବୁଡ଼ି ଧରିଥିବା ସ୍ମିଥ୍ ଏଥର ଟ୍ୟୁବ୍ ସହ ତଳକୁ ଖସି, ଦିଢୋକ ଲୁଣାପାଣି ପିଇଲା ପରେ ଭୟଙ୍କର ଶ୍ୱାସରୁଦ୍ଧ ଯନ୍ତ୍ରଣାରୁ ମୁକ୍ତି ପାଇଁ ଛାଟିପିଟି ହୋଇ ଶେଷଥର ପାଇଁ ଉପରକୁ ଆସି ପୁଣି ଏକ ଚିତ୍କାର କଲେ "ହେଲ୍‌ପ, ହେଲ୍‌ପ, ହେଲ୍‌ପ" ।

ନୋଳିଆ ଯୁବକ ଅସ୍ତୁମାର ଜାଲି, ସାହେବଙ୍କୁ ପ୍ରଥମେ ହୋଟେଲ୍ ସମ୍ମୁଖରେ ବାହାରିବାକ୍ଷଣି, ସନ୍ତରଣରେ ସାହାଯ୍ୟ ପାଇଁ, ଆହୂତି ହୋଇଥିଲା । ସାହେବ ତାକୁ ଧମକ ଦେଇ ଦୂରେଇ ଦେଇଥିଲା । ସେ ତେଣୁ ଆପଣା କପାଳକୁ ଆଦରି ଦୂର ବାଲିଗଦା ଉପରେ ବସି ସାହେବର ପହଁରକୁ ଆଦର କରୁଥିଲା । ସାହେବର ଆଗମ ପହଁର ଦେଖି ଅସ୍ତୁମାର ମନେ ମନେ ଅଭିଶାପ ଦେଉଥିଲା । "ମରନ୍ତା କି ?"

ଠିକ୍ ଏତିକି ବେଳେ, ନୋଳିଆ ଦୃଷ୍ଟିରେ ପଡ଼ିଲା ସାହେବର ବିକଳ ଅବସ୍ଥା, ଅସହାୟରେ ବୁଡ଼ି ଯାଉଥିବା ଦୁଇଟି ହାତ । ବିଜୁଳି ବେଗରେ ଅସ୍ତୁମାର ଲମ୍ଫ ଦେଲା ସମୁଦ୍ର ଗର୍ଭକୁ ।

ଚେତା ଫେରିବା ବେଳକୁ ମିଃ ସ୍ମିଥ୍ ଶୋଇଥିଲେ ସମୁଦ୍ର ବେଳାରେ, କୃଷ୍ଣକାୟ ନୋଳିଆର କୋଳରେ । ନୋଳିଆ ସ୍ମିଥଙ୍କ ପେଟରୁ ପାଣି ନିଗାଡ଼ି, କିଛିକ୍ଷଣ ପାଟିକୁ ପାଟିରେ ଶୋଷି, ଓଲଟ ପାଲଟ କଲା ଏବଂ ନିରଶରେ କହିଲା "ଯା ଗଲା..." ପୁଣିଥରେ ଟାଣକରି ନିଃଶ୍ୱାସ ନେଇ ପାଟିରେ ଶ୍ୱାସ ପ୍ରକ୍ରିୟା ଉଦ୍ୟମ କ୍ଷଣି, ସାହେବର ଶ୍ୱାସ ପ୍ରଶ୍ୱାସ ଆରମ୍ଭ ହେଲା । ସାହେବକୁ ପିଠିରେ କାନ୍ଧେଇ, ଘେନି ଆସିଲା ରାସ୍ତାକୁ । ସିଧା ଡାକ୍ତରଖାନା । ମିଃ ସ୍ମିଥ୍ ବଞ୍ଚିଗଲେ ।

କିନ୍ତୁ ଏହାପରେ ହିଁ ଅସଲ କାହାଣୀର ଆରମ୍ଭ । ମିଃ ସ୍ମିଥ୍ ଭଲ ହେଲାକ୍ଷଣି ବିଦାସମୟ ହୋଟେଲ୍ କୋଠରୀକୁ ଅସ୍ତୁମାର ଜାଲି ଓରଫ୍ ନୋଳିଆକୁ ଡ଼ାକିଥିଲେ । ତାଙ୍କୁ ସେତେବେଳେ ଘେରି ରହିଥାଆନ୍ତି, ତାଙ୍କର ସ୍ତ୍ରୀ, ପୁତ୍ର କନ୍ୟା ତଥା ମେନେଜର । ଅସ୍ତୁମାରକୁ ସାହେବ୍ କୁଣ୍ଢାଇ ଧରିଲେ । ଅନ୍ୟମାନେ ଲୁହ ପୋଛିଲେ, ସାହେବ ପଚାରିଲେ "ମୋର ବନ୍ଧୁ, ମୋର ଜୀବନ ରକ୍ଷାକଲ, କହ କଣ ଦେବି ?"

ନୋଳିଆ କହିଲା "ସାହେବ, ଠାକୁର ସିନା ତମକୁ ରକ୍ଷା କଲେ ! ମୁଁ ତ ନିମିତ୍ତ ମାତ୍ର ।"

ଏମିତି ବିଷମ ଉପନିଷଦୀୟ ଉତ୍ତର ବୁଝିବା ସାହେବ ପାଇଁ ସମ୍ଭବ ନଥିଲା । ତେଣୁ ତାକୁ ତାର ପରିବାର କଥା ପଚାରିଲେ ।

ଅସୁମାର ସାହେବଙ୍କୁ ସବୁ କହିଲା । ଦୂର ଝାଉଁ ବଣ ଭିତରେ ତାର ବରଡାର ତାର ଟିକି ଅସ୍ଥାୟୀ ଆବାସ । ମାଛ ମାରି ପେଟ ପୋଷେ । ନିଜର ଡଙ୍ଗା ନାହିଁ । ସାହିର ଆଉ ଜଣେ ବୁଢ଼ା ନୋଳିଆ ଡ଼ଙ୍ଗାରେ ସମୁଦ୍ର ଯାଏ । କେଇଦିନ ତଳେ ସେଇ ବୁଢ଼ାର ଯୁବାନ୍ ଟୋକୀ, ତାକୁ ଚାହି ଟାପରା କଲା ଏବଂ ସେ କେମିତି ତାର ବାହୁକୁ ଟିକେ ଟାଣିଦେଲା ଯେ, ବୁଢ଼ା ନୋଳିଆ ରାଗରେ ଆଉ ତାକୁ ସମୁଦ୍ର ନେଉ ନାହିଁ । ବଡ ସାହସ କରି ଅସୁମାର କହିଲା "ସାହାଯ୍ୟ ଯଦି ଦଉଛ ତେବେ ଡ଼ଙ୍ଗ ଟେ କିଣି ଦିଅ ବାବୁ, ତିନିଶହ ଟଙ୍କା ପଡ଼ିବ ।"

ମିଃ ସ୍ମିଥ୍ ସେକ୍ଷଣି ନିଜ ମେନେଜରକୁ ଡାକି ଅସୁମାରକୁ ପାଞ୍ଚ ହଜାର ଟଙ୍କା ଦେଲେ । ସପ୍ତାହ ମଧ୍ୟରେ କୋଠା ଘରଟାଏ, ଚାଳିଶ ହଜାର ଟଙ୍କା ଦେଇ ଅସୁମାର ନାମରେ କିଣି ଦେଲେ ! ଖୁବ୍ ଭଲ ଡ଼ଙ୍ଗା ପାଞ୍ଚଖଣ୍ଡ କିଣିଦେଇ, ପ୍ରତିମାସରେ କିଛି କିଛି ଅର୍ଥ ପଠାଇବାର ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଦେଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ ।

ଏଇ ନିରୀହ କଥାକାର ସେତେବେଳେ ପୁରୀ ଷ୍ଟେଟ୍ ବ୍ୟାଙ୍କର କେସିଅର୍ । ପ୍ରତି ମାସରେ ଅସୁମାର ପାଇଁ ସ୍ମିଥ୍ ସାହେବଠାରୁ ବିଦେଶୀ ମୁଦ୍ରାରେ ଡ୍ରାଫ୍ଟ ଆସେ ଏବଂ ଅସୁମାର ମୋ ହାତରୁ ଭାରତୀୟ ମୁଦ୍ରା ଗ୍ରହଣ କରି, ଆପଣା ଖାତାରେ ପକାଠ କରେ । ସେଇବେଳେ ନୋଳିଆ ଯୁବକ ସହ ମୋର ସମ୍ପର୍କ ଏବଂ ତାହାଠୁ ହିଁ ଉପରୋକ୍ତ ଇତିହାସ ପ୍ରତ୍ୟକ୍ଷ ଶୁଣିଥିଲି । ବରଂ ତତ୍ପର ଘଟଣାଟି ସଳଖେ ସଳଖେ ସତର୍କରେ ବଖାଣୁଛି ।

ନିରକ୍ଷର ନୋଳିଆ ପକ୍ଷରୁ ମୁଁ ସ୍ମିଥ୍ ସାହେବଙ୍କୁ ଚିଠି ଲେଖିଦିଏଁ । ପ୍ରଥମ ପତ୍ରରେ ଅସୁମାର ଆପଣା ବିବାହ ବିଷୟ ଲେଖାଇଲା । ଠିକ୍ ମାସେ ପରେ ସାହେବ ଦଶ ହଜାର ଟଙ୍କାର ଏକ ଡ୍ରାଫ୍ଟ ପଠାଇ ଦେଲେ । ତାହାର ଦଶ ମାସ ପରେ ସ୍ମିଥ୍ ସାହେବ ମହା ଆନନ୍ଦରେ ଅସୁମାରର ପ୍ରଥମ ସନ୍ତାନ ନିମିତ୍ତ ପାଞ୍ଚ ହଜାର ଟଙ୍କା ତଥା ଅନେକ ଦୁର୍ଲଭ ଖେଳଣା ପଠାଇଲେ । ପୁଣି ବର୍ଷେ ପରେ ଦ୍ୱିତୀୟ ସନ୍ତାନ ନିମିତ୍ତ ମହା ଖୁସିରେ ପାଞ୍ଚ ହଜାର, ତୃତୀୟ ବର୍ଷରେ 'ମହା ଖୁସିରେ' ପୁଣି ପାଞ୍ଚ ହଜାର । ଏମିତି ପ୍ରତି ଏଗାର ମାସ ବ୍ୟବଧାନରେ ଅସୁମାର ଆନନ୍ଦ ଗଦ୍ ଗଦ୍ ହୋଇ ମୋ ଦ୍ୱାରା ଚିଠି ଲେଖାଏ

ସ୍ମିଥ୍ ସାହେବ ନିକଟକୁ "ଆପଣ ଜାଣି ମହା ଆନନ୍ଦ ଲଭ କରିବେ ଯେ, ମୋର ସ୍ତ୍ରୀଙ୍କର ଚତୁର୍ଥ ପଞ୍ଚମ ଷଷ୍ଠ... ସନ୍ତାନ ଆଜି ଭାରତୀୟ ସମୟ ସାତଟାରେ ନିର୍ବିଘ୍ନରେ ଜନ୍ମଲଭ କରିଛି । ମାଆ, ପିଲା ଦିହେଁ ସୁସ୍ଥ । ଆପଣଙ୍କ ଆଶୀର୍ବାଦର ଅପେକ୍ଷାରେ... "

ସେଇଭଳି ଷଷ୍ଠ ବର୍ଷ ଯାଏ ଆନନ୍ଦ ଗଦ୍ ଗଦ୍ ସାହେବ ମୋଟା ଡ୍ରାଫ୍ଟ ନବ ଜାତକଙ୍କ ମଙ୍ଗଳ କାମନା କରି ପଠାଇଲେ ସପ୍ତମ ସନ୍ତାନ ପରେ, ସେମିତି ପତ୍ରଟି ପ୍ରେରିତ ହେଲ ।

ଦିନେ ମୁଁ ଅଫିସ୍‌ରେ ପହଞ୍ଚିବାକ୍ଷଣି, ମୋର ହାକିମ ମେନେଜର ମୋତେ ଡ଼ାକି, ଖଣ୍ଡେ ଡାକ ବଢ଼ାଇ ଦେଲେ । ପତ୍ରଟି ମେନେଜରଙ୍କ ଉଦ୍ଦେଶ୍ୟରେ ଫିଲଡେଲ୍‌ଫିଆରୁ ମିଃ ସ୍ମିଥ୍ ଲେଖିଛନ୍ତି । ଚିଠିଟି ପଢ଼ିଲି ।

ମହାଶୟ,

ଏକଦା ମୋର ପ୍ରାଣ ରକ୍ଷା କରିଥିବା ଆପଣମାନଙ୍କ ଜଣକୁ ଜମାରେ ଅର୍ଥ ଦେଣ ନେଣ ଏଯାଏଁ ସୁସ୍ଥରୂ ରୂପେ ସମାପନ କରିଥିବା ଯୋଗୁଁ ବିଶେଷ ଧନ୍ୟ-ବାଦ । ନୋଳିଆକୁ କୃତଜ୍ଞତା ସ୍ୱରୂପ ତାର ଦାରିଦ୍ର୍ୟ ମୋଚନ ପାଇଁ ଚେଷ୍ଟା କରିଥିଲି । ବାସଗୃହ, ବ୍ୟବସାୟ ସାମଗ୍ରୀ ତଥା ବିବାହାଦି ପାଇଁ ସାମାନ୍ୟ ଅର୍ଥ ସାହାଯ୍ୟ ମଧ୍ୟ କରିଥିଲି । କିନ୍ତୁ ମୂର୍ଖ ନୋଳିଆ ପ୍ରାପ୍ତ ସୁବିଧା ଏବଂ ସମ୍ପତ୍ତିରୁ ତାଭଳି କେଇ ଜଣ ନୋଳିଆହିଁ ସୃଷ୍ଟି କରିବାରେ ପ୍ରମତ୍ତ । ତାହାକୁ ସେହି ପ୍ରବଳ ସୃଷ୍ଟିଶୀଳ ସାଧନାରୁ ନିବୃତ୍ତ କର ନଗଲେ, ଏହି ନୋଳିଆ ସମଗ୍ର ଭାରତର ଉପକୂଳରେ ତା'ର ଦରିଦ୍ର ବଂଶଧରଙ୍କର ଏକ ଅବିଚ୍ଛିନ୍ନ ମାନବୀୟ ବଳୟ-ଘେରଇଦେବ । ପ୍ରତ୍ୟେକେ ଅପେକ୍ଷା କରୁଥିବେ, କୌଣସି ଏକ ବିତ୍ତଶାଳୀ ବିଦେଶୀର ସମ୍ଭାବ୍ୟ ଅପମୃତ୍ୟୁକୁ ।– ମୋର ସିନା ଅପମୃତ୍ୟୁ-ସଂଯୋଗ ଥିଲା ତାହାର କପାଳକୁ,– ଆଉଅନ୍ୟମାନଙ୍କ କପାଳ କ'ଣ ହେବ ?

ମୁଁ ଆହୁରି ଅଧିକ ଡ଼ଲର ଦେଇ, ତାକୁ ଏ ଦିଗରେ ଉତ୍ସାହିତ କରିବାକୁ ଚାହେଁ ନାହିଁ । ଏହି ଚିଠି ସହ ଆପଣଙ୍କ ଉଦ୍ଦେଶ୍ୟରେ ଏକ ହଜାର ଡଲର ତଥା

ନୋଲିଆ ପାଇଁ ଦଶ ହଜାର ପଠାଉଛି । ଦୟାକରି ମୋ ତରଫରୁ ଏତିକି କାମ କରିବେ । ସେଇ ନୋଳିଆ ଅସ୍ପୃମାରକୁ ଡ଼ାକି, କୌଣସି ଜଣେ ଦକ୍ଷ ବିଶେଷଜ୍ଞ ଡ଼ାକ୍ତରଙ୍କ ଦ୍ୱାରା ତାହାର ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଗ୍ୱର କରାଇ ନେବେ । ସେ ଯଦି ଅମଙ୍ଗ ହୁଏ, ତାହାହେଲେ ତାକୁ ଜଣାଇଦେବେ, ଏଇ ଟଙ୍କା ବା ଏଣିକି ମାସିକ ଟଙ୍କା ମଧ୍ୟ ସ୍ମିଥ୍ ଦେବ ନାହିଁ ।

ବିଶ୍ୱସ୍ତ, ଭିଭିଆନ୍ ସ୍ମିଥ୍"

କହିବା ବାହୁଲ୍ୟ ସାହେବଙ୍କ ଠାରୁ ଟଙ୍କା ଆସିବା ଖବର ପାଇ ଏଥର ଦ୍ୱିତୀୟ ଦାରଟିଏ ଗ୍ରହଣ କରିବା ପାଇଁ ସଦ୍ୟ ସିଦ୍ଧାନ୍ତ ନେଇଥିବା, ନୋଲିଆ ଆପଣା ଭବୀ ଶ୍ୱଶୁର ସହ ବ୍ୟାଙ୍କକୁ ଦଉଡ଼ି ଆସିଥିଲା । ବେଙ୍କ୍ କର୍ମଗ୍ୱରୀମାନେ ତାକୁ ଘେରିଯାଇ ସ୍ମିଥ୍ ସାହେବଙ୍କ ସର୍ତ୍ତ ଉପସ୍ଥାପନ କଲେ । ଯାହାନେଉ ଭବୀ ଶ୍ୱଶୁରର ପ୍ରତିବାଦ ସତ୍ତ୍ୱେ ନୋଳିଆ କିଛିକ୍ଷଣ ନୀରବ ହୋଇ ଅସ୍ତ୍ରୋପଗ୍ୱର ପାଇଁ ସିଧା ଡାକ୍ତରଖାନା ଯାଇଥିଲା ଏବଂ ଅମକୁ ଏକ ମହା ଜାତୀୟ ଲଜ୍ଜାରୁ ରକ୍ଷା କରିଥିଲା" ।



ବରେନ୍ଦ୍ର ମଉସା ଏବେ ଅବସର ପରେ ଭୁବନେଶ୍ୱର ଉଦ୍ୟାନ ମାର୍ଗରେ ରହୁଛନ୍ତି । ତାଙ୍କ ବଡ ପୁଅ ଶରତ ମୋର ସାଙ୍ଗ, ଏବେ ଇଞ୍ଜିନିୟର୍ । ତାଙ୍କ ସାନ ପୁଅ ସନ୍ତୋଷ ଏବେ ଡ଼ାକ୍ତର, ତା'ର ବାହାଘରଭୋଜି ନିମନ୍ତ୍ରଣ ପାଇଁ ମାଉସୀ ସହ ଆସିଥିଲେ । ମଉସା ମୋତେ ଦେଖିଲା କ୍ଷଣି କଳାହାଣ୍ଡି କଥା ଆରମ୍ଭ କଲେ 'କୁମାର ! କଳାହାଣ୍ଡିର ବର୍ତ୍ତମାନ ଅବସ୍ଥା ପାଇଁ ମୁଁ କମ୍ ଦାୟୀ ନୁହେଁ । ପୋଡୁଚାଷ ରୋକିବାପାଇଁ ଷାଠିଏ ମସିହା ବେଳକୁ ମୁଁ କେଇ ହଜାର କୁଟିଆ ପରିବାରଙ୍କ ଘର ଭାଙ୍ଗି ପୋଲିସ ସାହାଯ୍ୟରେ ଜଙ୍ଗଲ ଉପରୁ ତଳକୁ ଟାଣି ଆଣିଥିଲି ।

ତା'ର କିଛି ଦିନ ପରେ ରାଜଧାନୀରେ ଶିଳ୍ପପତିଙ୍କ ସହ ସରକାର କାଗଜରେ ଦସ୍ତଖତ କଲେ କଳାହାଣ୍ଡିର ଅର୍ଦ୍ଧାଧିକ ଜଙ୍ଗଲ କାଟିଦେବା ପାଇଁ ପଚିଶବର୍ଷର ଅଧିକାର ପାଇଲେ କାଗଜ କମ୍ପାନୀ । ଭରୁଆ କୁଟିଆ ଗୁହିଁଥାଏ । ଡ଼ି. ଏଫ୍. ଓ ହିସାବରେ ଲକ୍ଷ ଲକ୍ଷ ଟନ୍ ଗଛ ବାଉଁଶ ଗ୍ରହଣ କରି, ଜଙ୍ଗଲକୁ ପଦା କରି ଦେଲି । ସହରିଆ ପାଠ ପଢଲେ କାଗଜରେ, କୁଟିଆର ଭରସା ତୁଟିଲା, ଅକାଳ ଆସିଲା ।

ମୁଁ ପରିହାସରେ କହିଲି ମଉସା" ଆପଣ ତ ସେଠର ଚନ୍ଦନ ଆଣ ଅନ୍ୟମାନଙ୍କ ଭଳି ଏଠି ମହଲ ଗଢନାହାନ୍ତି । ସରକାରୀ ଆଦେଶ ପାଳନରେ ପାପ କ'ଣ ଯେ ଏତେ ଦୁଃଖ ।

ମାଉସୀ କହିଲେ । "କୁମାର, ପିଲାଙ୍କୁ ନେଇ ଭୋଜିକୁ ଆସିବୁ । ସନ୍ତୋଷ ଏବେ କଳାହାଣ୍ଡିରେ ଡ଼ାକ୍ତର । ମୋ ପଡ଼ିଶା କହୁଛନ୍ତି ସେଟା ଜଙ୍ଗଲୀ-ଜାଗା ଗୁଡାଏ ମୁର୍ଖ ଆଦିବାସୀ ସେଠି, ପାଣି ଟୋପାଏ ନାହିଁ ଯେ ପୋକମାଛି ଭଳି ଘାଣ୍ଟି ହୋଇ ଲୋକ ମରୁଛନ୍ତି । ମନ୍ତ୍ରୀଙ୍କୁ କହି ତାକୁ ଏ ଆଡ଼କୁ ବଦଳି କରିଆଣ ।'

ମୁଁ କିନ୍ତୁ ସମସ୍ତଙ୍କୁ କହିଲି, ମୁଁ କଳାହାଣ୍ଡି ଦେଖିଛି, ସେଠି ଲୋକଙ୍କୁ ଜାଣେ, ସନ୍ତୋଷ ସେଠିକି ଯାଉ, ଶୁକ୍ରୁ ଜାନୀ ଭଳି ମହାପୁରୁଷ ଅଛନ୍ତି, ସେଠି ମୋ' ପୁଅର କିଛି ଅମଙ୍ଗଳ ହେବ ନାହିଁ ।

ମଉସା ମାଉସୀ ଚାଲିଗଲା ପରେ ମୋ ସ୍ତ୍ରୀ ଇନ୍ଦୁଶ୍ରୀ ଆଉ ପିଲାମାନେ ପଚାରିଲେ, 'ଶୁକ୍ରୁ ଜାନୀ କିଏ ? ସେ କ'ଣ ଜଣେ ମନ୍ତ୍ରୀ—ଏମ୍. ଏଲ୍. ଏ. ମହାପୁରୁଷ ?

ତାଙ୍କର ସନ୍ଦେହ ନିବାରଣ ପାଇଁ ମୁଁ ଏହି ଉତ୍ତର ଦେଇଥିଲି ।

ଉଣେଇଶ ଶହ ବାଷଠି ମସିହା । ମୁଁ ସେତେବେଳେ ଭବାନୀପାଟଣାରେ ନବମ ଶ୍ରେଣୀର ଛାତ୍ର । ବାର୍ଷିକ ପରୀକ୍ଷା ବାସି ଦିନର କଥା । ଆମେ ବାରଜଣ ପିଲ ବିଚାର କଲୁ ଭଡ଼ା ସାଇକେଲ କେଇଖଣ୍ଡ ନେଇ ନିଘଞ୍ଚ ଜଙ୍ଗଲ 'ଗବଣଦର' ପ୍ରପାତକୁ ବଣଭୋଜି ପାଇଁ ଯିବା । ଟଙ୍କାଟେ ଲେଖାଏଁ ବାରଟଙ୍କା ଚାନ୍ଦା ଆଦାୟ ହେଲା । ଦୁଇ ଟଙ୍କାର ଚାଉଳ ଡ଼ାଲି, ରୋଷେଇ ହାଣ୍ଡି ଚାରିଅଣାର, ଟଙ୍କାକର ପନିପରିବା ଏବଂ ଟଙ୍କାକର ତେଲ ମସଲା ଆମ ପାଇଁ ଯଥେଷ୍ଟ ଥିଲା ।

ଆମେ ସକାଳ ପାଞ୍ଚଟାରେ ବାହାରିଲୁ । ସାତଟି ଭଡ଼ା ସାଇକେଲ ପାଇଁ ଦେଲୁ ତିନିଟଙ୍କା ଆଠଅଣା । ପାଞ୍ଚଟିରେ ଦୁଇଜଣ ଲେଖାଁଏ ଏବଂ ଅନ୍ୟ ଦୁଇଟିରେ ପରିବା ଆଦି ବୁହାହେଲା । ସେଦିନ ହାଟ ପାଳି । ଡଙ୍ଗରଳରୁ କୁଟିଆ କନ୍ଧମାନେ ଛେଳି, କୁକୁଡ଼ା ଆଣ ବିକିବାକୁ ଆଣୁଥାଆନ୍ତି । ଏସବୁ ବଦଳରେ ସେମାନେ କିଣନ୍ତି କରିଆ (କନା) ଆଉ ଲୁଣ । ଆମେ ଜଣେ କୁଟିଆ ଠାରୁ ତିନିଟଙ୍କା ଦେଇ, ତିନିପଟ ଦୁଇକେଜିଆ ଗଞ୍ଜା କୁକୁଡା କିଣିଲୁ । ମୁଁ ତ୍ରିଭୁବନର ସାଇକେଲ ଉତ୍ତରେ ଜାକି ହୋଇ ବସିଥାଏଁ । ମନ୍ଦାର ଫୁଲିଆ ଗଞ୍ଜା ତିନିଟିକୁ ମୋ ସାଇକେଲ ଆଗ ହେଣ୍ଡଲରେ ଓହଳାଇ ଦିଆଗଲା ।

ରୀତିମତ ଘଣ୍ଟାଏ ସାଇକେଲ ବାହିଁଲାପରେ ବୁଦୁବୁଦିକା ଜଙ୍ଗଲ ଆରମ୍ଭ ହେଲା । ତାପରେ ପରେ ଘୋର ଜଙ୍ଗଲ । ନିର୍ଜନ ନିଶୂନ ଆକାଶ ଛୁଆଁ ବୃକ୍ଷଗହଳ ଭେଦୀ ଜଙ୍ଗଲୀ ରାସ୍ତା । ଅନଭ୍ୟସ୍ତ ଅନ୍ଧାର ସମସ୍ତଙ୍କୁ ନୀରବ କରି ଦେଉଥାଏ ।

ଗିରୀଶ୍ ଆଉ ହାଇଦର ପରିବେଶକୁ ହାଲୁକା କରିବା ପାଇଁ କଟକିଆବାବୁ ମାନଙ୍କୁ ବ୍ୟଙ୍ଗ କରିବା ପାଇଁ ଉଦ୍ଦିଷ୍ଟ ହଳିଆ ଗୀତଟିଏ ଆରମ୍ଭ କଲେ ।

"ବାଟେ ବାଟେ ଯାଉଥିଲି ଦେଖିଲି କୁହ୍ନିଆ
ଢେକାନ୍ ମାରି ଭଙ୍ଗିଦେଇ କୁହ୍ନିଆର ହିଆ,
ଛେଗ କୁହ୍ନିଆ ବିକ୍ଲେ ଡ଼ାକେ
ମୋତେ ରଖ ବୁଆ ହୋ
ମୁଇଁ କଟକିଆ ହୋ

ସେ ଦୁହେଁ ଗାଉଥିଲେ ବେଳେ ଆମେ ସମସ୍ତେ ପାଳି ଧରୁଥାଉଁ । ଏ ସମୟରେ ଜିପ୍ ଗାଡ଼ିଟିଏ ଖୁବ୍ ଜୋର୍‌ରେ ଆମମାନଙ୍କୁ ଅତିକ୍ରମ କରି ଚାଲିଗଲା । ସେ ସମୟରେ ପଡ଼ାବାଲା ଆଉ ମହାରଜାଙ୍କୁ ଛାଡ଼ିଦେଲେ ଅନ୍ୟ କେଉଁ କଳାହାଣ୍ଡିଆର ଜିପ୍‌ଥିବା ଆମକୁ ଜଣା ନ ଥିଲା । ଆମେ ଭବିଲୁ ଗାଡ଼ିରେ କଟକିଆ ମାନେ ଯାଉଛନ୍ତି । କଟକିଆ କହିଲେ ଆମେ ବୁଝୁଥିଲୁ ଯିଏ ଆମ ଭଷା କହୁନଥିଲେ । ସିଏ ବାଲେଶ୍ୱର, ପୁରୀ, କେଉଁଝର ବା ଗଞ୍ଜାମର ହୋଇପାରେ । ଯେଉଁଠି ସରକାରୀ ଚାକିରିଆ, ନହିଲେ, ଚଉକିଆଠୁଁ କଲେକ୍ଟର ଯାଁଏ କଟକିଆ ଯେଉଁଠି ମହାରଜାଙ୍କ ଶାସନ ଛାଟ କଟକିଆ କିରଣୀ ଆଉ ହାକିମଙ୍କୁ ହସ୍ତାନ୍ତର, ସେଇ ଚିର ଶୋଷିତ ଶାସିତ ମୂଳକର ପିଲାମାନଙ୍କର, ଏଇ ହୀନମନ୍ୟତା ଇର୍ଷାର ସଙ୍ଗୀତ କ୍ଷମଣୀୟ କି ନୁହଁ ଜାଣେନା । ନିଶ୍ଚୟ ସ୍ୱାଭବିକ ଥିଲା । ଗୀତର ଲହରି ତାଙ୍କୁ ଦେଖି ବେଶ୍ ଜମି ଆସିଲା ।

ଆମେ ଲକ୍ଷ୍ୟ କଲୁ ଗାଡ଼ିଟି କିଛିକ୍ଷଣ ପରେ ଆମ ଦିଗକୁ ଲେଉଟି ଆସୁଛି । ଚୋର ମନ ଗଣ୍ଠିରେ, ଅପ୍ରତ୍ୟାଶିତ ପ୍ରତିକ୍ରିୟା ଏବଂ ଆକ୍ରମଣ ପାଇଁ ଅପ୍ରସ୍ତୁତ ସାଙ୍ଗମାନେ ଆପଣା ଆପଣା ସାଇକେଲମାନ ଫୋପାଡ଼ି ଦେଇ ଦୁଇକଡ଼ର ଜଙ୍ଗଲ ଭିତରକୁ ତଡ଼ିତ୍ ବେଗରେ ଦଉଡ଼ିଯାଇ ଅଦୃଶ୍ୟ ହୋଇଗଲେ । ଢ଼ିଆଁରେ ଜାତୀୟ ଚମ୍ପିୟାନ ତ୍ରିଭୁବନ ମୋତେ ସାଇକେଲ ସହ ଫୋପାଡ଼ି ଦେଇ ଏକା ଢ଼ିଆଁକେ ଉଭନ । ଏଇ ସୁଯୋଗରେ ପଟେ କୁକୁଡ଼ା ହଠାତ୍ ଫଡ ଫଡ୍ କରି କେଁ କେଁ ଶବ୍ଦରେ ଜଙ୍ଗଲ ଭିତରକୁ ଉଡ଼ିଗଲା । ତାହାର ମୁକ୍ତିରେ ଉଦ୍‌ବୁଦ୍ଧ ଅନ୍ୟ ଦୁଇଟି କୁକୁଡାଙ୍କୁ ସମ୍ଭାଳିବା ବେଳେ ମୋ ଜାମାର କନାଟି

ଆଗଚକରେ ଗୁଡ଼ାଇ ହେବା ଯୋଗୁଁ ସାଇକେଲ ତଳେ ଘୋଷାଡ଼ି ହୋଇ, ଅବଶିଷ୍ଟ କୁକୁଡାଙ୍କ ଭଳି ଆସନ୍ନ ବିପଦକୁ ଦୟନୀୟ ହୋଇ ଅପେକ୍ଷା କଲି । ସେତିକି ବେଳକୁ ଗାଡ଼ିର ଡ୍ରାଇଭର୍ ଏବଂ ଅନ୍ୟଜଣେ ବାବୁ ଓହ୍ଲାଇ ମୋ ପାଖକୁ ଦଉଡ଼ି ଆସିଲେ । ମାତ୍ର ଭୟରେ ମୁଁ ଆଖି ବୁଜିଦେଲି ।

କିନ୍ତୁ ବାବୁଜଣକ ମୋତେ ତଳୁ ଉଠାଇ ସହାନୁଭୂତି ମିଶା ସ୍ୱରରେ କହିଲେ ତମର କିଛି ହୋଇନି ତ ? ମୋର ଧୂଳିମାଟି ଦିହରୁ ଝାଡ଼ି ଦେଲେ । ମୁଁ କଣ କହିବି ଭାବୁଛି ଏ ସମୟରେ ଜିପ୍ ପଛରୁ ମୋ ଶ୍ରେଣୀରେ ପଢୁଥିବା ଡ଼ି.ଏଫ୍.ଓ ସାହେବଙ୍କ ପୁଅ ବାହାରି ଆସି କହିଲା "ଆରେ କୁମାର ଏମିତି ପଡ଼ିଗଲୁ କାହିଁକି ? ଆମେ ସମସ୍ତେ ଆଜି ରବଣଦର ଯାଉଛୁଁ । ତୋତେ ଦେଖିଲି, ବାପାଙ୍କୁ କହି ଗାଡ଼ି ଫେରଇ ଆଣିଛି ତୋତେ ନେବା ପାଇଁ, ମୋ ସାଙ୍ଗରେ ଆସିବୁନା ? ହରିଣ ଶିକାର ହେବ, ମାମୁଁ ଯାଇଛନ୍ତି ଆଗରୁ, ଆ" ।

ନିରପଦ ବ୍ୟବଧାନରୁ ଆମକୁ ପ୍ରତ୍ୟକ୍ଷ କରୁଥିବା ମୋର ସାଙ୍ଗମାନେ ଭରସା ବାନ୍ଧି ଗୋଟି ଗୋଟି ଧୀରେ ଧୀରେ ବାହାରି ଆସିଲେ । ସାଇକେଲରେ ପନ୍ଦର ମାଇଲ୍ ଆସିବାପରେ ମୋ ପିଣ୍ଡୁ ଦୁଇଟିରୁ ରକ୍ତ ନିଗିଡ଼ିବା ଉପରେ । ଅନ୍ୟ ଦିଗରେ ଜିପ୍ର ମୁଲାୟମ୍ ଗଦି ଉପରେ ଗଡ଼ିଯିବାର ସଉକ, ପୁଣି କୁକୁଡାରୁ ପଟେ ଉଣା ହୋଇଥିବାଯୋଗୁଁ ମୁଁ ନିହାତି ଜିପରେ ଯିବା ଉଚିତ ବୋଲି ମୋର ସାଙ୍ଗମାନେ ଦୃଢ ଯୁକ୍ତି ବାଢିବାଦେଖି ମୁଁ ବାଧ୍ୟହୋଇ ଜିପ୍ରେ ବସିଲି ।

ଜିପ୍ରେ ଶରତ୍, ତା'ର ସାତବର୍ଷର ଉଉଣୀ ମୀତା, ଏବଂ ପାଞ୍ଚବର୍ଷର ସାନଭାଇ ସନ୍ତୋଷ ଏବଂ ଶରତର ବାପା, ମାଆ ମୋତେ ଆଗ୍ରହରେ ଭିତରକୁ ଡାକିଲେ । ମୁଁ ମୋର ଖଣ୍ଡିଆ ଖାତ୍ର ଏବଂ ପଳାୟନର କାରଣ ଠିକ୍ ଠିକ୍ ବର୍ଣ୍ଣନା କଲି । ସମସ୍ତେ ହସିଲେ । ଶରତ କହିଲା, ଆରେ ମୂର୍ଖ, ତମଗାଳି ଗୀତ, ଏଇ ଲେଣ୍ଡ'ରେଭରର ଶବ୍ଦକୁ ଟପି କେମିତି ଶୁଣାଯାଇଥାଆନ୍ତା ?

ମୁଁ ଘଟଣାଟି ହୃଦୟଙ୍ଗମ କରି ନିଜର ବୋକାମୀ ବୟାନ କରି ସାରିଥିବା ଯୋଗୁଁ ଚିରଚରିତ ବୋକାଙ୍କ ଭଳି ତୃତୀୟ ହସଟି ହସିଲି । ମୋର ସ୍ୱଚ୍ଛନ୍ଦ ବୋକାମୀରେ ଅନ୍ୟମାନେ ମଧ୍ୟ ହସିଲେ ।

ଦିନ ନଅଟାରେ ଆମେ ବଙ୍ଗଳାରେ ପହଞ୍ଚିଲୁ । ଶରତର ମାମୁଁ କଟକରେ କଲେଜରେ ପଢ଼ନ୍ତି । ସେ ତାଙ୍କ କଲେଜ ପଢ଼ା ସାଙ୍ଗମାନଙ୍କ ସହ ଦିନକ ଆଗରୁ ଶିକାର ପାଇଁ ଆସି ସେଇଠି ରହୁଥାଆନ୍ତି । ଆମେ ପହଞ୍ଚିଲା ବେଳକୁ ଜଣେ ବାବୁ ଥାଆନ୍ତି–ଅନ୍ୟମାନେ ଜିପ୍‌ରେ ଜଙ୍ଗଲକୁ ଶିକାର ପାଇଁ ଯାଇଥାଆନ୍ତି ।

ରବଣଦର ଯିବାକୁ ହେଲେ ସେଇଠୁଁ ଝରଣା କୂଳେ କୂଳେ ଦୁଇ ମାଇଲ ଚାଲି ଚାଲି ଯିବାକୁ ହୁଏ । ବାଟରୁ ଆମେ ରଜାଙ୍କ ବଗିଚାରୁ ଆମ୍ବ ଆଣିଥିଲୁ । ତହିଁରୁ କିଛି ନେଇ, ଆମେ ସମସ୍ତେ ଚାଲିଲୁ । ଡାଇଭର ବାବୁ ଗାଡ଼ି ଜଗ ସେଠି ରହିଲେ ।

ସ୍ୱଚ୍ଛ ଶାଳ ପିଆଶାଳର ଛାଇତଳେ ସୁନ୍ଦର ବଣ୍ୟ ଝରଣାର ଶୀତଳ ଧାର, ଚଇତିଆ ଫୁଲଙ୍କର ମହକ, ବଣ୍ୟ ଡାହୁକର ଲହରିଆ ଡ଼ାକ, ପରିବେଶକୁ ଆକର୍ଷଣୀୟ କରିଥାଏ । କୁଟିଆମାନଙ୍କ କେତୋଟି ଲୋକକଥା କହି ସେମାନଙ୍କ ମନୋରଞ୍ଜନ ମୁଁ କରୁଥାଏ । ସମ୍ପୂର୍ଣ୍ଣ ନିରାଞ୍ଜ ବନ-ଭୂମିରେ ପାହାଡ଼ି ଝରଣାଟିଏ ତିରିଶଫୁଟ ଉଚ୍ଚରୁ ପ୍ରଚଣ୍ଡ ବେଗରେ ଅତଡ଼ା ଖିଳା ଦିହରେ ଉତ୍‌କ୍ଷିପ୍ତ । ବିମୁଗ୍‌ଧ ପରିବେଶରେ ଆନନ୍ଦର ସମୟ କେମିତି କଟିଗଲା ଜାଣି ହେଲା ନାହିଁ । ଦିନ ଗୋଟାଏ ବେଳକୁ ଆମ ପାଇଁ ବଙ୍ଗଳାରୁ ଡ଼ାକରା ଆସିଲା, ହରିଣ ମାଂସ ପ୍ରସ୍ତୁତ । ଶୀଘ୍ର ଆସ ।

ଆମେ ବଙ୍ଗଳାରେ ପହଞ୍ଚିବା ବେଳକୁ ଶରତର ମାମୁଁ ଏବଂ ତାଙ୍କ କଲେଜ ସାଥୀମାନେ ସେ ସମୟର ଫେସନ୍, ଟେରିକଟ୍. ପେଣ୍ଟ ସାର୍ଟ ଆଉ ଫିସ୍ ଫିସିଆ ହାଓ୍ବାଇ ଚପଲ ପିନ୍ଧି ହିନ୍ଦୀ ଗୀତ ଗାଉଥାଆନ୍ତି । ତାଙ୍କ ବେଶଭୁଷା ବିଶେଷତଃ ସେଇ ବହଳିଆ ଚପଲର ମୁଲାୟମ୍ ଶକୁଚନ ମୋତେ ଈର୍ଷାନ୍ୱିତ କରୁଥାଏ । ସେ ଯାହାହେଉ, ବଙ୍ଗଳା ଆଗରେ ମୃତ ହରିଣର ମଖମଲି ଆଭରଣ ଶୁଖୁଥାଏ ।

ବଙ୍ଗଳାକୁ ଲାଗି ବରପାଲି ପାଇଖାନାଟିଏ । ସେଠିକି ଯାଇ ଯେମିତି କବାଟ ଖୋଲି ଦେଇଛି ଭିତରକୁ କିଏ ଜଣେ ମୋତେ ଶକ୍ତ ଧକ୍‌କାଟେ ମାରିଲା

ଯେ ମୁଁ ବିକଳରେ ଚିତ୍କାର କରି ତଳେ ପଡ଼ିଗଲି । ମୋ ଚିତ୍କାରରେ ଭୋଜିରେ ବସିବାକୁ ଯାଉଥିବା କଲେଜ ପିଲା ସମସ୍ତେ ଦଉଡ଼ି ଆସିଲେ । ସମସ୍ତେ ପ୍ରାୟ ଏକା ସ୍ୱରରେ କହିଲେ, "ଆରେ ଆରେ ସେଇ ବଦ୍‌ମାସ କୁଟିଆ ପୁଣି ବର୍ଣ୍ଣିଗଲା । ମାର୍, ମାର୍, ବନ୍ଦ କରିଦିଅ ।

ମୁଁ ଦେଖିଲି ପାଇଖାନା ଭିତରେ ଜଣେ କୃଷ୍ଣକାୟ କୁଟିଆ ଯୁବକ ହାତ, ମୁହଁ ଶକ୍ତ ଦଉଡ଼ି ଆଉ ଗାମୁଛାରେ ବନ୍ଧା ହୋଇଛି । ଗୋଡ଼ ଦଉଡ଼ି ଛିଣ୍ଡାଇ ସେ ମତେ ଆଘାତ କରିଛି । କ୍ରୋଧରେ ତା'ର ଶରୀର କମ୍ପି ଉଠୁଥାଏ । ମୁହଁରେ ଘୃଣା ଏବଂ ବିରକ୍ତିର ଅଗ୍ନିଭାସ ।

ମୁଁ ଘଟଣା କ'ଣ ପଚାରିଲି । ଶରତର ମାମୁଁ ଚୁମ୍ବକରେ ଘଟଣା ବୁଝାଇ ଦେଲେ । କଲେଜ ପିଲାମାନେ ଦିନସାରା ଜଙ୍ଗଲ ବୁଲିଲେ ହେଲେ ଶିକାର ପାଇଲେ ନାହିଁ । ପାଣି ଘାଟରେ ରାତିସାରା ଅନାଇ ରହିଲେ, ଠେକୁଆଟିଏ ବି ଆସିଲେ ନାହିଁ । ନିରାଶ ହୋଇ ଫେରିବା ବେଳେ ଏଇ କୁଟିଆ ହରିଣଟିଏ କାନ୍ଧରେ ବୋହି ନେଉଥିଲା । ତାକୁ ସମସ୍ତେ ଅନୁରୋଧ କଲେ ଭାଇ ! ହରିଣଟି ଦେଇଦେ । ନିହାତି ଜରୁରୀ, ଯେତେ ପଇସା ମାଗିବୁ ଦେବୁ ।"

କିନ୍ତୁ କୁଟିଆ ହରିଣ ଦେବାକୁ ମନାକଲା । ତା ଭାଷାରେ ଅନେକ ରାଗିଲା । ତା ଭାଷା ତ କାହାକୁ ଜଣାନାହିଁ, ଅଧିକ ପଇସା ମାଗୁଛି ଭାବି, ଦଶଟଙ୍କିଆ ନୋଟ୍ ଚାରିଖଣ୍ଡ ତାକୁ ଯଚା ହେଲା । ଟଙ୍କା ଦେଖି କୁଟିଆ ଟୋକା ଟାଙ୍ଗିଆ ଧରି ସମସ୍ତଙ୍କୁ ଗୋଡ଼ାଇଲା । ଟଙ୍କାକୁ ଫୋପାଡ଼ି ଦେଲା । କଲେଜ ପିଲା ରାଗିଗଲେ, ଜବର୍‌ଦସ୍ତ ହରିଣକୁ ଜିପ୍‌ରେ ନଦି ବଙ୍ଗଳାକୁ ଚାଲି ଆସିଲେ । କିନ୍ତୁ ସେତିକିରେ କୁଟିଆର ଉତ୍ପାତ ବନ୍ଦ ହେଲା ନାହିଁ । ଘଣ୍ଟାଏ ଭିତରେ ଧନୁଶର ଆଉ ଟାଙ୍ଗିଆ ଧରି କୋଡ଼ିଏ ମାଇଲ୍ ପାହାଡ଼ିଆ ରାସ୍ତା ଝପଟି ଆସିଲା ଜିପ୍ ପଛରେ ! ଡ୍ରାଇଭର୍ ତାକୁ କୌଶଳରେ କାବୁ କରିନଥିଲେ, ଆଜି ସବୁ କଟକିଆଙ୍କୁ ସାଫ୍ କରିଥାଆନ୍ତା । କୁଟିଆ ଟୋକା ଏତେ ବହପ, ନୋଟ୍ ଦେବାରୁ ସବୁକୁ ଟିକିଟିକି ଟୁକୁରା କରିଦେଲା ।

କୁଟିଆ ପିଲାର ବିକଳ ଅବସ୍ଥା ଦେଖି ମୋର ଦୟା ହେଲା । ମୁଁ କହିଲି "କୁଟିଆ ଭାଷା ମୁଁ ଜାଣେ, ମୁଁ ତାକୁ ବୁଝାଇ ଦେବି ।"

ମୋର ପ୍ରସ୍ତାବକୁ ସମସ୍ତେ ବିରୋଧ କଲେ । ତାଙ୍କର ଆଶଙ୍କା କୁଟିଆକୁ ବନ୍ଧନରୁ ଖୋଲିବା ଅର୍ଥ ବାଘ ମୁହଁରେ ହାତ ଦେବା । ଶରତର ମାଆ କିନ୍ତୁ କହିଲେ "ତା'ର ଶିକାର ବଳାତ୍କାରରେ ଯେନି ଆସିଛ ! ତାକୁ ଗୋଡହାତ ବାନ୍ଧି ପାଇଖାନାରେ ରଖିବା ଅନ୍ୟାୟ ।"

ତାଙ୍କ କଥାରେ ସମସ୍ତେ ରାଜି ହେଲେ । ମୁଁ ବନ୍ଦୀ କୁଟିଆ ପାଖକୁ ଯାଇ କୁଟିଆ ଭଷାରେ କହିଲି "ମିତେ ! ମୁଁ ବାବୁ ମାନଙ୍କଠାରୁ ସବୁ ଶୁଣିଲି । ସେମାନେ ଅନ୍ୟାୟ କରିଛନ୍ତି । ସେମାନେ ଦୂର ଗାଁର ଲୋକ । ଆମ କଥା କିଛି ବୁଝନ୍ତି ନାହିଁ । ସେମାନେ ହିଁ ଏବକାର ରଜା । ଦେଖିଲୁ ନାହିଁ ଟିକିଏ ଟୁକୁରା କାଗଜରେ କ'ଣ ଲେଖିଦେଲେ ଯେ ଏତେ ବଡ଼ ଜଙ୍ଗଲର ବାଉଁଶ ଓ ଗଛ କୋମ୍ପାନୀ ବାଲା ବୋହି ନେଲେ । ପୁଣି ତାଙ୍କ ହାତରେ ବନ୍ଧୁକ, ଆମର ଟାଙ୍ଗିଆକୁ କାହିଁକି ଖାତିର୍ କରିବେ ? ଯାହା ହେଲଣି ଭୁଲିଯା ମିତେ ! ମୁଁ ଆହୁରି ଅଧିକ ପଇସା ଦେବି, ଆଉ ହରିଣ ଛାଲ ମଧ୍ୟ ନେଇଯା, ଆଉ ଜଳି କରନା ।"

ମୋ ମୁହଁରେ କୁଟିଆ ଭଷା ଶୁଣି କୁଟିଆ ଓରଫ୍ ଶୁକ୍ରୁଜାନୀ ଏକ ଅଦ୍‌ଭୁତ ଆତ୍ମୀୟତାରେ ଗଦ୍‌ଗଦ୍ ହୋଇଗଲା । କିନ୍ତୁ ମୋର ସମସ୍ତ ଅନୁରୋଧ ଶୁଣିବା ବେଳକୁ ସେ କାନ୍ଦି ଉଠିଲା । କହିଲା "ମିତେ ! ତୁ ଯଦି ସବୁ ଜାଣିଛୁ, ମୋର ଆଉ କ'ଣ କରିବାର ଅଛି । କେବଳ ମୋର ଗୋଟିଏ ଅନୁରୋଧ ମିତେ ! ସେଇ ରନ୍ଧା ମାଂସରୁ ଦନାଟିଏ, ମୋତେ ଦେବୁ, ମୁଁ ମୋ ଠାକୁରଙ୍କ ପ୍ରସାଦ କରିବି । ତା ପରେ ସମସ୍ତେ ମାଂସ ଖାଇବ ।"

ତା'ର ପ୍ରସ୍ତାବ ସମସ୍ତଙ୍କୁ ଶୁଣାଇ ଦେଲି । ଖୁବ୍ ଖୁସିରେ, ତା ପାଇଁ ସ୍ୱତନ୍ତ୍ର ଏକ ଦନାରେ ରନ୍ଧା ହରିଣ ମାଂସ ବଢ଼ାହେଲା । ଶୁକ୍ରୁଜାନୀ, କୁରେଇ ଫୁଲଟିଏ, ମାଂସ ଉପରେ ବୁଲାଇ ପର୍ବତ ଆଉ ସୂର୍ଯ୍ୟଙ୍କୁ ପ୍ରଣାମ କରି କୁଟିଆ ଭଷାରେ କହିଲା "ହେ ପ୍ରଭୁ ! ବହୁ ଚେଷ୍ଟା କରି ଏମାନଙ୍କୁ ବଞ୍ଚାଇ ପାରୁନାହିଁ । ତେଣୁ ତା ଆଗରୁ ମୁଁ ମରିବାକୁ ଯାଉଛି, ମୋର ଗୁହାରୀ ମୋତେ ପୁଣିଥରେ ଏଇଠି କୁଟିଆ କରି ଜନ୍ମ ଦେବୁ !

ପ୍ରାର୍ଥନା ପରେ ଶୁକ୍ରୁ ମାଂସ ଦନାକୁ ପାଟିକୁ ନେଇ ଝୋଳ ସହ ପାଟିରେ ଚୁହିଦେଲା । ଦୁଇ ଆଖିରୁ ଅବିଶ୍ରାନ୍ତ ଅଶ୍ରୁର ଧାର ଦେଖି ମୁଁ ବିସ୍ମିତ ହେବା ବେଳକୁ, ପର କ୍ଷଣରେ ଶୁକ୍ରୁ ଗଁ ଗଁ ହୋଇ ତଳେ ଲେଟିପଡ଼ିଲା । ତା'ର ଶରୀର ଧୀରେ ଧୀରେ ନୀଳ ହୋଇ ଆସିଛି । ମୁଁ ଚମକି ପଡ଼ି ତାକୁ ଟେକିଲି । ଅତି କଷ୍ଟରେ ଶୁକ୍ରୁ କହିଲା "ମିତେ ! ଆଜି ଭୋରରେ ଏଇ ହରିଣକୁ ଶର ମାରିଲି । ଗୋଡରେ ବାଜିଲା । ଘାଏଲା ହରିଣ ପଳାଇବା ବେଳେ, ଗୋଟାଏ ବିଷାକ୍ତ ରଣା ସାପ ଉପରେ କୁଦି ଦେଲା । ସାପଟି ହରିଣ ଦିହରେ ଗୁଡାଇ ହୋଇ, ଗୁରିପାଞ୍ଚ ଚ୍ଛେଟରେ ମାରିଦେଲା । ଛଟପଟ ହୋଇ ହରିଣ ସେଇଠି ପଡ଼ିଗଲା, ନୀଳହୋଇ । ମୁଁ ତାକୁ ନେଇ ଯାଉଥିଲି, ଛାଲ ପାଇଁ । ଏଯାଏଁ ବାବୁମାନଙ୍କୁ ମୁଁ ସେଇ କଥାହିଁ କହିଛି, ମାଂସ ଖାଇଲେ ସବୁ ମରିବ, ତୁ ମଧ୍ୟ ମିତେ, ସବୁ ଜାଣି ମୋତେ କପଟ ଭବୁଛ । ମୁଁ କିମିତି ବଞ୍ଚି ଥାଆନ୍ତି, ତମ ସମସ୍ତଙ୍କୁ ବିଷଦେଇ । ମୋ ପରେ ବରଂ "... ...

ମୁଁ ଚିତ୍କାର କଲି " ମାଂସ ଖାଅନାହିଁ, ମାଂସରେ ବିଷଅଛି" ।

ସେକ୍ଷଣି, ଶୁକ୍ରୁଜାନୀକୁ ଭବାନୀପାଟଣା ଡାକ୍ତରଖାନା ନିଆଗଲା । ସାତ-ଦିନ ଅଚେତ ରହିବା ପରେ ଡ଼ାକ୍ତର ଖାନାରେ ଶୁକ୍ରୁଜାନୀ ଚେତା ଫେରି ପାଇଲା । ବରେନ୍ଦ୍ର ମଉସା, ମାଉସୀ, ତାଙ୍କ ପୁଅ ଶରତ, ସନ୍ତୋଷ, ସଭିଏଁ ଶୁକ୍ରୁଜାନୀର ଗୋଡ଼ଧରି ଭେ ଭେ କାନ୍ଦୁଥିବା ମୁଁ ଦେଖିଛି ।

ସେଦିନ ମାଉସୀଙ୍କୁ କଥା ଦେଇଥିଲି, ତେଣୁ ସନ୍ତୋଷର ବାହାଘରକୁ ପରିବାର ସହ ଯାଇଥିଲି । ଏଡ଼େବଡ଼ ସାହେବଙ୍କ ଡାକ୍ତର ପୁଅ ବାହାଘରରେ କିଛି ଆଡମ୍ବର ନଥିଲା । ସାଦା ଭତ ଡାଲି ଆଉ ମିଠା ଗୋଟାଏ ଗୋଟାଏ । ମୁଁ ମାଉସୀଙ୍କୁ ଭରସୀ କହିଲି, "ମାଉସୀ ଏଡେ ବଡ ଉତ୍ସବ, ମାଛ ମାଂସ ବାଜା ବାଜଣା ଟିକିଏ ନାହିଁ, ପଇସା କାହାଁପାଇଁ ରଖିବ ?"

ମାଉସୀ ମୋତେ ପରିବାର ସହ ପୁଅ ବୋହୁଙ୍କ ପାଖକୁ ଘେନିଗଲେ । ପୁଅ ବୋହୂ ସହ ନିକଟରେ ଏକ ଚଉକିରେ ବସିଥାଏ, କୁଟିଆ କନ୍ଧଟିଏ ।

ମାଉସୀ ତା'ର ହାତଧରି କାନ୍ଦି କାନ୍ଦିକହିଲେ କୁମାର ! ଦିନେ ନୀଳକଣ୍ଠ ହୋଇ ଏଇ ଠାକୁର ମୋର ବଂଶ ରକ୍ଷା କରିଥିଲେ । ତାଙ୍କ ମୁଲକ କଳାହାଣ୍ଡିରେ ଆଜି, ଦୁର୍ଭିକ୍ଷ ପଡ଼ିଛି । ମୁଁ ମାଂସ, ମାଛ, ଭିଡ଼ିଓ ସଉକ କରି କ'ଣ ପାଇବି ? ଘେଜିଭାତ ସାଙ୍ଗ ବାଜର ସମସ୍ତ ପଇସା ମୁଁ କଳାହାଣ୍ଡି ରିଲିଫ୍ ପାଣ୍ଠିକୁ ଦାନ କରି ଦେଇଛି, ଆଉ ସନ୍ତୋଷକୁ ଡାକ୍ତର କରି ସେଠି ଦେଇଛି, ସେଠି ଏମିତି ଦେବତାଙ୍କ ସେବାକରିବାର ସୁଯୋଗ ପାଇବ ।"

ମୋର ଚକ୍ଷୁର ଅମାନିଆ ଢେଉଙ୍କୁ ମୁଁ ଲୁଚାଇବାର ବ୍ୟର୍ଥ ଉଦ୍ୟମ କରିଥିଲି ଏଥର ।



ବାଘ ଛେକ୍‌ସି ଦୂଟାତଲେ, କଲେଟ୍ ଢେକାନ୍ ଚଲେ ।
ପେନୁ ଥିସି ବେଲଉ ମୁଢ଼େ, ଖୁଙ୍କେନ୍ ଥିସି ଡାଲେ ।।
ବାଘ୍‌କେ ଦେବୁ ଟାଙ୍ଗିଆ ମିତେ, ସାପ୍‌କେ ଦେବୁ ଠେଙ୍ଗିଆ ।

ପେନୁ ଦେବୁ ଆନୁଛେନ୍‌ତା, ଖୁଙ୍କେନ୍ ଉଲୁଭ ମିନ୍ତ ।
ମିତ୍‌ନୀ ତିନେ ମନ୍ ଭର୍‌ମେ, ମିତର ମନହୁଲ୍‌ସେ ।।

ପେନୁ ବାଘ୍ ଖୁଙ୍କେନ୍ କଲେଟ୍ ମିତ୍‌ନୀ ତନର କଲ୍‌ସେ
ଦଶ ଆଙ୍ଗ୍‌ଠି ସାଆଁଟିଯାଏ, ଧଙ୍ଗର କୁଟିଆ ସର୍‌ମା
ଜାନ୍‌ସି ଜାଏଁ ମିତେ ଘରେଲ, ଉର୍‌ତିଲଆର ଚୁମା ।।'

ଇନ୍ଦ୍ରଜିତ୍ ବାବୁ ଚିଲିକା ବକ୍ଷରେ ପୂର୍ଣ୍ଣ ଜହ୍ନକୁ ଦେଖି ଏମିତି କୁଟିଆ ଗୀତଟିଏ ଆରମ୍ଭ କରିଦେଲେ । କଂଟ୍ରାକ୍‌ଟର ଇନ୍ଦ୍ରଜିତ୍‌ର କବିତା ପ୍ରୀତି ବିଷୟରେ ମୋର ବିଶେଷ ଧାରଣା ନାହିଁ । ମୋର ଆଦିବାସୀ ଗଳ୍ପମାନଙ୍କର ସେ ଜଣେ ମୁଗ୍ଧ ପାଠକ । ବସ୍ତୁତଃ ଓଡ଼ିଶାର ସବୁଠୁ ଧନୀ ପାଠକ । ଇନ୍ଦ୍ରାବତୀ ପ୍ରକଳ୍ପରେ ଏବେ ଖ୍ରଲିଶ ଲକ୍ଷ ଟଙ୍କାର ଗୋଟାଏ ବିଲ୍ ପାଇଲେ ଏବଂ ସେହିଖୁସିରେ ଏଇ କଥାକାର ତଥା ଅନ୍ୟଜଣେ ବଂଧୁ ଗୌରହରିଙ୍କୁ ଏଠିକି ଆମନ୍ତ୍ରଣ କରିଛନ୍ତି ।

ଯୋଜନା ଅନୁଯାୟି ଆମେ ରମ୍ଭା ଡ଼ାକ ବଙ୍ଗଳାରେ ସଂଧ୍ୟାରେ ପହଞ୍ଚିଲୁଁ ଇନ୍ଦ୍ରଜିତ୍‌ର କାର୍‌ରେ । ସେଇଠି ଆମ ପାଇଁ ଅପେକ୍ଷା କରିଥାଏ ଦୁର୍ଲ୍ଲଭ ଖାଦ୍ୟ ଓ ପାନୀୟ । ଦାମିକା ସ୍କଚ୍ ତନ୍ଦୁର ଚିକେନ୍ ଆଉ କେତେ କିଛ ।

କିନ୍ତୁ ପୂର୍ଣ୍ଣମୀ ରତିରେ ବଙ୍ଗଲ କୋଠରୀ ମଧ୍ୟରେ ଆବଦ୍ଧ ହୋଇ ରହିବା ଆମର ପ୍ରକୃତି ବିରୁଦ୍ଧ । ଇନ୍ଦ୍ରଜିତ୍ ସେଥିପାଇଁ ଆୟୋଜନ କରିଥିଲ ସ୍ୱତନ୍ତ୍ର ।

ଚିଲିକା କୂଳରେ ଅପେକ୍ଷା କରିଥାଏ ସୁସଜ୍ଜିତ ନୌକାଟିଏ । ଆକାଶରେ ପୂର୍ଣ୍ଣଚନ୍ଦ୍ର ଏବଂ ଚିକ୍କୀତ ଚିଲିକାର ତରଙ୍ଗିତ ବକ୍ଷରେ ଆମେ ତିନି ବନ୍ଧୁ । ପାଖରେ ପର୍ଯ୍ୟାପ୍ତ ପରିମାଣର ପାନୀୟ ଏବଂ ଆନୁସଂଗିକ ଖାଦ୍ୟ ।

ନାଉରିଆକୁ ଇନ୍ଦ୍ରଜିତ୍ ଆଦେଶ ଦେଲା ଡଙ୍ଗା ବାହିବାକୁ । ଆମର ଲକ୍ଷ୍ୟ ଥିଲା ଏକ ନିର୍ଦ୍ଦିଷ୍ଟ ନିର୍ଜନ ଦ୍ୱୀପ । ସେଇଠି ରାତ୍ରୀ ଯାପନର ସୁବନ୍ଦୋବସ୍ତ ହୋଇ-ଥାଏ । ନଉକା ଚାଲିଲା, ଏବଂ ଇନ୍ଦ୍ରଜିତ୍ ଆରମ୍ଭ କଲେ ସେଇ କୁଟିଆ ଗୀତଟି ।

ସ୍ୱରର ପ୍ରଭାବ କି ସ୍ୱାଭାବିକତା କହିବା କଷ୍ଟକର କିନ୍ତୁ ଇନ୍ଦ୍ରଜିତ ଗୀତଟି ଖୁବ୍ ଆତ୍ମୀୟତାରେ ଠିକ୍ କୁଟିଆଙ୍କ ଭଳି ଗାଉଥିଲେ । ମୁଁ ପ୍ରଶ୍ନ କଲି "ଇନ୍ଦ୍ରଜିତ୍ । ଏଇ କୁଟିଆ ଗୀତଟି ଶିଖିଲେ କେଉଁଠି ?"

ମୋର ପ୍ରଶ୍ନର ଉତ୍ତର ନ ଦେଇ ଇନ୍ଦ୍ରଜିତ୍ କହିଲା "କୁମାରବାବୁ ! ଦେଖ ଦେଖ, ସେଇ ନାଉରୀର ଆହୁଲା ବାଉଁଶ ଚନ୍ଦ୍ରକୁ ଛୁଇଁଲାଣି । ଦେଖିଲ, ନାଉରୀ କେମିତି ବାଉଁଶକୁ ଚନ୍ଦ୍ର ଦେହରେ ଖୁମ୍ପି ଦେଉଛି ଆଉ, ଡଙ୍ଗାକୁ ଠେଲି ନେଉଛି ଆଗକୁ ।"

ମୁଁ କହିଲି "ପେଟ୍‌ରେ ଭଡ୍‌କା ବ୍ଲଡ଼ିମେରୀ ଆଉ ହୁଇସ୍କି ତିନିହେଁ ମିଶିଲେ ଏମିତି ଅକବିଏ କ୍ଷଣକେ କବି ବନି ଯାଆନ୍ତି, ବୁଝିଲ ଇନ୍ଦ୍ରଜିତ୍ ।"

ମୁଁ ଆଉ ଗୋଟାଏ କଥା ମଧ୍ୟ ଚିନ୍ତା କରୁଥିଲି । ବେକୁବ୍ ଆର୍କିମିଡ଼ିସ୍ ରଜାଙ୍କୁ ଠିଆହେବା ପାଇଁ ପୃଥିବୀ ବାହାରେ ଜାଗାଟିଏ ମାଗୁଥିଲେ ପୃଥିବୀକୁ ଟେନିସ୍ ବଲ୍ ଭଳି ଫୋପାଡ଼ିବା ପାଇଁ । ରଜା ଏଇ ହୁଇସ୍କିରୁ କିଛି ତାଙ୍କୁ ଦେଇଥିଲେ, ଏ ପୃଥିବୀଟି ଏଠି ନ ଥାଆନ୍ତା ପରା । ତେବେ ଆର୍କମିଡ଼ିସ୍‌ଙ୍କର ଲେଭର୍ ତଥ୍ୟକୁ ମୋଟେ ବୁଝି ନପାରି ଇନ୍ଦ୍ରଜିତ୍ ପାଞ୍ଚଥର ବି.ଏ. ଫେଲ୍ ପରେ କୋଟିପତି, ତାକୁ ଲେଭର୍ ତତ୍ତ୍ୱ ବୁଝାଇବା ମୋଟେ ସହଜ ନୁହଁ । ତାର ଲିଭର୍‌ରେ ଇହଡ଼ି ଭାଙ୍ଗୁଥିଲା ହୁଇସ୍କି ।

ଇନ୍ଦ୍ରଜିତ୍ ପୁଣି ଆରମ୍ଭ କଲା "କୁମାର ତମେ କୁଟିଆ ମାନଙ୍କ ବିଷୟରେ ଅନେକ କାହାଣୀ ଲେଖିଛ । ତମେ ଜାଣିଛ, ଏମିତି ପୂର୍ଣ୍ଣମୀ ରାତିରେ ଚନ୍ଦ୍ରଗ୍ରହଣ ପଡ଼ିଲେ କୁଟିଆ ମାନେ କ'ଣ କରନ୍ତି ?"

କୁଟିଆ ପଡ଼ାରେ ଜନ୍ମ, କୁଟିଆ କଥାରେ ପୋଖତ, ମୋତେ କୁଟିଆଙ୍କ ବିଷୟରେ ପ୍ରଶ୍ନଟି ପଗ୍ଭରି ଇନ୍ଦ୍ରଜିତ୍ ଆହୁରି ଚକିତ କରୁଥିଲେ । ମୁଁ ଓଲଟି ପ୍ରଶ୍ନକଲି "ଇନ୍ଦ୍ରଜିତ୍ ତମେ ଜାଣିଛ ଯଦି କୁହ ।"

ଇନ୍ଦ୍ରଜିତ୍ ଏଥର ମୋତେ ତାଚ୍ଛଲ୍ୟ କରି କହିଲା ବୁଝିଲ ଗଡ଼ଜାତିଆ କୁମାର । ତମେ ତ ଖାଣ୍ଟି କୁଟିଆ କନ୍ଧଟାଏ, ଯୋଗକୁ କଟକିଆ ଗଉଡ଼ଘରେ ଫସିଗଲ, ଆଉ କଟକି କଥା ଶିଖିଲ, ନହେଲେ ଏମିତି କେତେ କୁଟିଆ ତାଙ୍କ ଧାଙ୍ଗଡ଼ିଙ୍କୁ କାହାଣୀ ଶୁଣାଉଛନ୍ତିନା, ତମର କଥା ଶୁଭୁଛି ଲୋକଙ୍କୁ, କାରଣ ତମର ଶଶୁର ଘର କଟକ," ମୁଁ ହସିଲି ପ୍ରତିବାଦ କଲିନାହିଁ କଥାଟା ଅନେକଟା ଯୁକ୍ତି ସଙ୍ଗତ ଥିଲା, ତେବେ ମୁଁ ଓଲଟି କହିଲି "ତମେ କୁଟିଆ ଭାଷା ଶିଖିଲ, ତମର କଣ ଶଶୁର ଜଣେ କୁଟିଆ ।

ମୁଁ ଜାଣେ ଇନ୍ଦ୍ରଜିତ୍ ବାହା ହେଇଛି କଟକର ଜଣେ ନାମ୍‌ଜାଦା ଜମିଦାର ପରିବାରରେ । ଶୁଣିଛି ତାର ଗୋଟାଏ ପୁଅ ଏବେ ବିଦେଶରେ ପଢୁଛି କଂପ୍ୟୁଟର ।

ମୋର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଇନ୍ଦ୍ରଜିତ ଆରମ୍ଭ କଲା । "ହଁ କୁମାର, ମୋର ଶଶୁର ଜଣେ କୁଟିଆ । କେବଳ କୁଟିଆ ନୁହେଁ, ଦିଶାରୀ, କୁଟିଆ ସର୍ଦ୍ଦାର, ଶୁଣ କହୁଛି ସେଇକଥା, ।"

ନିଜିକା କୂଳରେ ଏ ସମୟରେ ମାଡ୍ରାସ ମେଲ୍ ଖୁବ୍ ଜୋରରେ ସିଁଟି ବଜାଇ ଗ୍ଭଲିଥାଏ । ଇନ୍ଦ୍ରଜିତ୍ ସେ ଦିଗକୁ ଗ୍ଭହିଁ ଆରମ୍ଭ କଲା ।

"ଆଜିକି ଦଶବର୍ଷ ତଳର କଥା । ସେତେବେଳେ ଆମର କାଠ କଣ୍ଟ୍ରାକ୍ଟ ଥାଏ ଥୁଆମୁଲ୍ ରମ୍ପୁରରେ । କାଠ ବାଉଁଶ କାଟି ପେପର୍‌ମିଲ୍‌କୁ ଯୋଗାଇବା ଥିଲା ଠିକା । ମୁଁ କାମ ତଦାରଖ ପାଇଁ ଜଙ୍ଗଲ ଭିତରେ ତମ୍ବୁରେ ରହେ । ପାଖରେ ସଦାବେଳେ ଥାଏ ବନ୍ଧୁକ । ଶିକାର କରିବା ଥିଲା ମୋର ବଡ଼ ସଉକ ।

ଦିନେ ସନ୍ଧ୍ୟାବେଳେ ଶିକାରରେ ବାହାରିଲି । ଗୋଟାଏ ପାହାଡ଼ୀ ନଈ କୂଳକୂଳେ ନିଘଞ୍ଚ ଜଙ୍ଗଲ । ଖୁବ୍ ସତର୍କରେ ଯାଉଥାଏଁ । ହଠାତ୍ ନଈ ଭିତରୁ ଏକ ଆର୍ତ୍ତ ନାରୀ କଣ୍ଠରେ ମୁଁ ଚମକି ପଡ଼ିଲି । ଦେଖିଲି, ନଈ ସୁଅରେ ଯୁବତୀଟିଏ ଭସିଯାଉଛି, ଚିତ୍କାର ଛାଡ଼ୁଛି ବିକଳରେ । ବେଶୀ କିଛି ଚିନ୍ତା କରିବାର ଆଉ ସମୟ ନଥିଲା, ବନ୍ଧୁକ ସେଇଠି ଫୋପାଡ଼ି ଡେଇଁ ପଡ଼ିଲି ପାଣିକୁ । ଢଡକୁ ଓଟାରି ଆଣିଲି ଯୁବତୀକୁ ।

ଓଟାରି ଆଣିବା ବେଳେ ଦେଖିଲି, ତାର ଦୁଇ ଗୋଡ଼କୁ ଛନ୍ଦି ଦେଇଛି, ଗୋଟାଏ ଲମ୍ବା ସାପ । ସାପର ମୁଣ୍ଡକୁ ଯୁବତୀ ଟାଣରେ ଧରିଛି, ତେଣୁ ଦଂଶି ପାରୁନାହିଁ, କିନ୍ତୁ ଗୋଡ ଛନ୍ଦି ହୋଇ ପଡ଼ିଯାଇଛି, ପାରି ହେଉଥିବା ପାଣିରେ । ତା ଦିହରେ କିଛି ହିଁ ଆଭରଣ ନାହିଁ ।

କୂଳକୁ ଆସିଲା ପରେ ମୋ ଛୁରୀଟ ନେଇ ଟିକିଏ ଦୂରେଇ ଯିବାକୁ କହି, ଗୋଟାଏ ହାତରେ କାଟିଆଣିଲା ସାପକୁ । ସାତ ଆଠଗଡ଼ କାଟିବା ପରେ ମୁଣ୍ଡଟିକୁ ଫୋପାଡ଼ି ଦେଲା ପାଣିକୁ, ଆଉ ଦଉଡ଼ି ଆସି ନୋଟିଗଲା ମୋ କୋଳରେ ନିର୍ବିକାରରେ ।

କଳା ମୁଗନୀ ପଥର ଗଢ଼ା ଚିକ୍‌କଣ ମୂର୍ତ୍ତୀଟେ ଭଳି ଥିଲା ତାର ଶରୀର । ପୂରିଲା ପୂରିଲା ହାତ, ଆଉ କୁନ୍ଦ କାମନ ବକ୍ଷଭର । ଢଳଢ଼ଳ ତରଳ ଦୁଇଟି ଆଖି । ନିରୀହ ନିଷ୍କପଟତାର ପ୍ରତିମୂର୍ତ୍ତୀ, ପ୍ରାଣଭର ଫୁଲଟିଏ । ଅତି ସ୍ୱାଭାବିକ ଭାବରେ ଭିଡ଼ିଆଣିଲା ମୋର ମଥା ଏବଂ ଅତି ନିବିଡ଼ରେ ଚୁମ୍ବନ କଲା ମୋର କପାଳ । କୃତଜ୍ଞତାରେ ସମ୍ପର୍କ ଆହୁରି ବଢିଲା ବୁଝିଲି ସେ ଗାଉଥିଲା ଏଇମିତିକା ଆଉ ଗୋଟାଏ ଗୀତ ।

"ଲଇଆ ବେନ୍‌କୁ ପେନୁର୍ ଦାନ୍,
ଡଙ୍ଗର୍ ଉପର୍ ବାଦଲ୍
ଡଙ୍ଗରୀ ଛାତ୍ ଧଂଗରୀ ହାତ୍,
ଆମ୍‌ରି ଛୁଆଁ ଶୀତଲ୍
ଧାଙ୍ଗର ଛାତି, ଡ଼ଙ୍ଗରୀ ପାତି,

ଧାଙ୍ଗରୀ ହେଲା ପାନି
ବାଘ୍ ଭାଲୁ କଲେତ୍ ଭୂତ୍
ଢଅଁଗ ମରଦ୍ ଚୁନି"

ଅତି ବିହ୍ୱୋଳିତ ଭବରେ କହୁଥିଲା ଇନ୍ଦ୍ରଜିତ୍ । ଗୀତଟି ଗାଇ ଅର୍ଥଟି ମଧ୍ୟ ବୁଝାଇ ଦେଲା । ସୃଷ୍ଟିର ପ୍ରଥମେ ଆକାଶରେ ଉଡ଼ିଯାଉଥିଲା ମେଘ, ଦିହରେ ଭରତି ପାଣି । ଢଅଁଗ ବା ଠାକୁର ପେନୁ, ଗଢିଲେ ମରଦଟିଏ । ସେ ପାହାଡ଼ ହୋଇ ତାର ଅମର ସ୍ପର୍ଶରେ ଭିଡ଼ିଆଣିଲା ମେଘକୁ । ବିସ୍ତୃତ ଧାଙ୍ଗଡା ଛାତିରେ, ନାଚିକୁଦି, ମେଘ ରୂପୀ ଧାଗଡ଼ି ହେଲା ଝରଣା । ଆଉ ଦିହିଙ୍କର ସଙ୍ଗମରେ ବନିଗଲା, ସୁନ୍ଦର ଅରଣ୍ୟ ଆଉ ସେଇ ଅରଣ୍ୟର ବାଘ ଭାଲୁ, ସାପ, ବୃକ୍ଷ, ସଭିଏଁ ହେଲେ ମରଦ କୁଟିଆର ଚୁନି, ଖେଳ ସାମଗ୍ରୀ । ଆମେ ତା'ର କୁଟିଆ ତତ୍ତ୍ୱ ଶୁଣିବା ବଦଳରେ ଅଧୀର୍ଯ୍ୟରେ ପ୍ରଶ୍ନ କଲୁ "ତାପରେ, ତାପରେ କେମିତି ଆଗେଇଲା କହୁନ ?"

ତାପରେ ଯୁବତୀକୁ ମୋର ସାର୍ଟଟି ପିନ୍ଧାଇ ଦେଲି । ସେ ଆସିଲା ମୋର ତମ୍ବୁକୁ । ଖୁବ୍ ଥକି ଯାଇଥାଏ । ତମ୍ବୁର ଭିତରେ ପଶିଲା କ୍ଷଣି, ମୁଁ ଭୁଲିଗଲି ସଂସାରକୁ । ଗୋଟା ବୋତଲ ହୁଇସ୍କି ସଙ୍ଗେ ସଙ୍ଗେ ସାରିଦେଲି । ତାକୁ ମଧ୍ୟ ଦେଲି ଗ୍ଲାସ୍‌ରେ ।

ନିର୍ଜନ ଜଙ୍ଗଲ ମଧ୍ୟରେ, ରମଣୀଟି ମୋର ହାବଭାବ ଦେଖି ଟାଣିନେଲା, ତମ୍ବୁ ବାହାରକୁ । ମୋର ସମଗ୍ର ଶରୀର ସେତେବେଳେ ଉତ୍‌କ୍ଷୀପ୍ତ ଆଗ୍ନେୟ ଆବେଗରେ । ସେ ବୁଝାଇଥିଲା ତାର ଭାଷାରେ ଚନ୍ଦ୍ର ଆକାଶ, କୁରେଇ ଫୁଲ ଏମିତି ଅଧାବୁଝାକେଇକଥା । ମୋର ଅଭିସାରକୁ ସେ ପ୍ରତିହତ କରୁଥାଏ, କିନ୍ତୁ ତାର ବିନୟ ବ୍ୟାକୁଳ କଥାମାନ, ମୋତେ ଆହୁରି ଅଧିକ ଉତ୍ତେଜିତ କରୁଥାଏ । ଶେଷରେ ସେ କଇଁ କଇଁ ହୋଇ ଶୋଇପଡ଼ିଲା ମୋ ଛାତିରେ, କେବଳ କହିଲା "ମିତେ ! ଦିଶାରୀ ପାଖକୁ ଯିବା, ମୁଁ ତ ଏଣିକି, ତୋର ଏଇ ଜହ୍ନଥିବା ଯାଏଁ ତୋ'ର, କେବଳ ତୋର ।"

ସକାଳ ହେଲା ବେଳକୁ ନଈରୁ ସ୍ନାନ ସାରି ମୋତେ ଉଠାଇଲା । ମୋର ନିଶା ସଙ୍କି ଆସୁଥାଏ ଏଥର ମୁଁ ଥରୁଥାଏଁ । ତାର ନିର୍ଦ୍ଦେଶରେ କୁଟିଆ ଗ୍ରାମକୁ, ତମ୍ବୁ ସ୍ଥାନରୁ କେଇମାଇଲ୍ ଉଚ୍ଚ ପାହାଡ଼ ଉପରେ, ଆମେ ଚାଲିଲୁ ।

ସେଠି କୁଟିଆ ସର୍ଦ୍ଦାର ଦିଶାରୀ ଠାରୁ ସବୁ ଶୁଣିଲି । କୁଟିଆ ପରମ୍ପରାରେ ମୋର ବିବାହ ହୋଇଗଲା ଯୁବତୀ ସହ ଠିକ ତିନିଦିନ ପରେ । ତିନିଦିନ ପରେ କାହିଁକିନା, ମଝିରେ ପଡ଼ିଲା ପୂର୍ଣ୍ଣିମୀ ଚନ୍ଦ୍ରଗ୍ରହଣ । ଚନ୍ଦ୍ରଗ୍ରହଣ ଦିନ, କୁଟିଆ ମାନେ 'ମେଦା ସଂଗ୍ରହ କରନ୍ତି ।

ଜହ୍ନ ଯେତେବେଳେ ଆକାଶକୁ ଉଠେ, ଦିଶାରୀ ଆକାଶକୁ ଅନାଇଥାଏ । ଗ୍ରହଣ ଆରମ୍ଭ ହେଲାକ୍ଷଣିହି ବିଗଟ ନିଶାନ୍ ଦିହରେ ସେ ମୋଟା ଚମଡ଼ାର ପାହାର ପିଟିଯାଏ । ଧାଙ୍ଗଡ଼ା ମାନେ ଜମାହୋଇ ଯାଆନ୍ତି ହାତରେ ଫର୍ସା, ବର୍ଚ୍ଛା, ଆଉ ଧନୁଶର ମାନ ଧରି । ତାପରେ ଦିଶାରୀ ଜଙ୍ଗଲ ମଧ୍ୟରୁ ମହାଲିମ୍ବ ଗଛର ଚେରରେ ଗୁଡ଼େଇ କିଛି ମାଂସ ଫୋପାଡ଼ିଦିଏ ହୁତ୍‌ହୁତ୍ ଜଳୁଥିବା ନିଆଁ ପାଖକୁ । ଦଗଶିଝା ମାଂସକୁ ଦିଆଯାଏ ଗୋଟାଏ ପୋଷା କୁକୁରକୁ ।

କୁକୁରଟି ମାଂସ ଖାଇଲାକ୍ଷଣି ଏମିତି ପ୍ରକାରେ ଭୁକିବା ଆରମ୍ଭ କରେଯେ ଜଙ୍ଗଲଟି ହଠାତ୍ ହୋଇଯାଏ ଏକ ମହାରହସ୍ୟର ଉପତ୍ୟାକା । ତାପରେ କୁକୁରଟି ପାହାଡ଼ ଉପରକୁ ଦଉଡ଼ିଯାଏ, ତା ପଛରେ ଯାଆନ୍ତି ଦିଶାରୀ ଆଉ ସଶସ୍ତ୍ର ଧାଙ୍ଗଡା ଦଳ ।

କୁକୁର ଯାଇ ପହଞ୍ଚେ ପାହାଡ଼ ଶିଖରରେ । ସେଇଠି ମୂଷା ଭଳି ମାଟି ଖୋଳିବା ଆରମ୍ଭ କରେ, ଆଗ ଦୁଇ ଗୋଡ଼ରେ । ଗାତଟିଏ ବଢ଼ିଯାଏ, କୁକୁରଟି ଭୋ ଭୋ କରି ପୁଣି ଖୋଳେ ଗାତ । ଗାତ ମଧ୍ୟରୁ ବାହାରି ଆସେ ବିଶାଳକାୟ ସାପଟିଏ ଏବଂ ପ୍ରଥମରେ ହିଁ କାମୁଡ଼ି ଧରେ କୁକୁରକୁ । ଅନେକ ସମୟରେ ସାପଟି ଗିଳିଦିଏ କୁକୁରକୁ ଏବଂ ସେକ୍ଷଣି ଗ୍ରାମିଆଙ୍କୁ ତାର ମୁଣ୍ଡରେ ଖସେ ଫାର୍ସା, ବର୍ଚ୍ଛ ଓ ତୀର । ସାପଟିର ମୁଣ୍ଡ ବିଦୀର୍ଣ୍ଣ ହୋଇପଡ଼େ ଏବଂ ଦିଶାରୀ ସେଇ ମୁଣ୍ଡ ମଧ୍ୟରୁ ବାହାର କରେ ଚକମକ କରୁଥିବା ଚିଜଟିଏ । ତାହାକୁ କହନ୍ତି "ମେଦା" ।

ବିବାହ ଦିନ ପିଟା ରୂପାରେ ତିଆରିହୁଏ ଖଗଲ, ବେକରେ କୁଟିଆ ରମଣୀ (ଝିଅ) ମାନେ ଏହାକୁ ପିନ୍ଧନ୍ତି । ଏହି ଖଗଲ ଭିତରେ ଥାଏ ଖୋପଟିଏ, ତା ମଧ୍ୟରେ ଜଗନ୍ନାଥଙ୍କର କାଷ୍ଠକାୟରେ ବ୍ରହ୍ମସ୍ଥାପନ ପରି ଦିଶାରୀ ସ୍ଥାପନ କରେ "ମେଦା" ।

ଦିଶାରୀ ମୋତେ ଖଗଲଟିଏ ଦେଇ କହିଲା ଯୁବତୀ ଗଳାରେ ପିନ୍ଧାଇବା ପାଇଁ । ମୁଁ ପିନ୍ଧାଇ ଦେଲି, ଦିଶାରୀ କହିଲା "ବାବୁରେ ! ମୋର ଝିଅକୁ ତୁ କନିଆ କଲୁ" ଖଗଲ ଦେଲୁ । ତାକୁ ନେଇଯାଆ । କେବେ ତାକୁ ଛାଡ଼ିବୁ ନାହିଁ । ଯେନୁ ଦେବତାର ମେଦା ଅଛି ଗଳାରେ । ସବୁ ଦୁଃଖ ତୋର ସେ ନେଇଯିବ । ହେଲେ, ଯଦି କେବେ ତାକୁ ଠକିଦେବୁ, ଛାଡ଼ି ଦେବୁ, ତେବେ ଦିଶାରୀ କୁଟିଆ ଟୁକେଲ୍ କାନ୍ଦିଆ ତୋତେ କ୍ଷମା କଲେ ହେଲା । ନ ହେଲେ ଖଗଲ ଭାବିଲେ, ତୁ ଯେଉଁଠି ଥାଆନା କାହିଁକି ଅଜଗର ପେଟରେ ଯିବୁ ।"

ଦିଶାରୀ ଏହା କହି, ବୋଝାଏ କୁରେଇ ଫୁଲ ଅଜାଡ଼ିଦେଲା ଦିହିଙ୍କ ମୁଣ୍ଡରେ ।"

ଇନ୍ଦ୍ରଜିତ୍ ଚୁପ୍ ରହିଲା କିଛିକ୍ଷଣ । ଆମେ ପୁଣି ପ୍ରଶ୍ନ କଲୁଁ "ତାପରେ, ତାପରେ କ'ଣ ହେଲା" ।

ଇନ୍ଦ୍ରଜିତ୍ ଏଥର ବେଶ୍ ଗମ୍ଭୀର ହୋଇଯାଇ ଥାଏ । ପୁଣି ଆରମ୍ଭକଲା ।

"ବିବାହ ପରେ ମୁଁ ଆସିଲି ତମ୍ଭୁକୁ । ତାପରେ ଜିପ୍‌ରେ ଯୁବତୀ ସହ ଆସିଲି କେଶିଙ୍ଗା ଷ୍ଟେସନ୍ । ସେଇଠୁଁ ଆସିଲି ବିଜୟ ନଗର । ସେଇଠି ରାତି ଅଧକୁ ଆସିଲା "ମାଡ୍ରାସ୍ ହାଓ୍ୱାଡ଼ା ମେଲ୍" । ପ୍ରଥମ ଶ୍ରେଣୀରେ ଗୋଡ଼ାଏ ସଂପୂର୍ଣ୍ଣ କୁପେ ରିଜର୍ଭ କରିଥିଲି ।

ସେତେବେଳକୁ ମୁଁ ସ୍ଥିର କରିଥାଏଁ, ମୁଁ ଆତ୍ମ ହତ୍ୟା କରିବି । ଘରକୁ କୁଟିଆ ସ୍ତ୍ରୀକୁ ନେବା ମୋତେ ସମ୍ଭବ ନଥିଲା । ମୋର ପ୍ରଥମ ପୁଅ ସ୍କୁଲ୍ ଯାଉଥାଏ । ଘରେ ସ୍ତ୍ରୀ, ଆଭିଜାତ୍ୟ ମୋର ସମାଜ । ମୁଁ ମାରାତ୍ମକ ବିଷ କିଛି ଆୟୋଜନ କରି ରଖିଥାଏଁ ପାଖରେ ।

ଟ୍ରେନ୍ ଭିତରେ ବୋତଲଟିଏ ବାହାର କରି ପିଇଲି । ଯୁବତୀଟି ଝରକା ଆଡ଼୍ ଦେଖୁଥାଏ ପୃଥିବୀ । ତାକୁ ଓଟାରି ଆଣିଲି କୋଳକୁ । କିଛିକ୍ଷଣ ପରେ ସେହିଁ କହିଲା "ହେଇ, ଦେଖ କେଡେ ସୁନ୍ଦର ପୋଖରୀଟିଏ । ଜହ୍ନ ପଡ଼ିଛି ।"

ମୁଁ ଦେଖିଲି ଟ୍ରେନ୍ ଗ୍ଲଲିଛି ଚିଲିକା ମଝିରେ । ହଠାତ୍ ମୋ ଭିତରେ ଏକ ଉପାୟ ଦେଖାଗଲା । ଅଂଧାର ମଧ୍ୟରେ କବାଟ ଖୋଲିଗଲା । ମୁଁ ତାକୁ ଆଗ୍ରହରେ ଡ଼ାକି କହିଲି, "ଆସୁନ୍ତୁ ତୋତେ ଦେଖାଇ ଦେବି । ସେଇଟା ପୋଖରୀ ନୁହଁ, ସମୁଦ୍ର ବିରଟ ହ୍ରଦ" । ବାଆଁରେଇ ନେଇଗଲି କବାଟ ପାଖକୁ ।

ଜହ୍ନ ଜ୍ୟୋତ୍ସ୍ନା ଓ ଚିଲିକା ଦେଖି ସେ ବିସ୍ମିତ ହୋଇ ମୋ ଛାତିରେ ଆଉଜି କହିଲା "ମିତ, ଏତେ ବଡ଼ ପୋଖରୀର ହୁଡ଼ା କାହିଁ ଯେ ପାଣିକୁ ଆକଟ କରୁଛି ? କାହିଁ ବା ତା'ର ମରଦ, ସିଏ ଏମିତି ଯୁବତୀକୁ କୋଳାଇ ଧରିଛି ?"

ମୁଁ ଆଉ କିଛି ଶୁଣିନି । ଏକ ଶକ୍ତ ଧକ୍କାରେ ତାକୁ ଠେଲି ଦେଲି ଟ୍ରେନ୍ ତଳକୁ । ଦୁଇହାତ ଟେକି ସେ ପାଟି କରୁଥାଏ "ମିତ, ମିତରେ–ମିତରେ ।"

ଇନ୍ଦ୍ରଜିତ୍ ଝାଳନାଳ ହୋଇ ଯାଇଥାଏ । ଦୀର୍ଘ ସମୟ ଯାଏଁ ଚୁପ୍ ରହିଲୁ ଆମେ ମଧ୍ୟ ନିର୍ବାକ୍ । ଡ଼ଂଗାବାଲା ହିଁ ପରିବେଶକୁ ହାଲୁକା କରି କହିଲା "ବାବୁ ! ତମେ କ'ଣ ତାକୁ ଜାଣି ଜାଣି ଫୋପାଡ଼ି ଦେଲ, ସେ ପଡ଼ି ଯାଇନି" ।

ଇନ୍ଦ୍ରଜିତ୍ ଏଥର ପୁଣି ଗୋଟାଏ ଗ୍ଲାସ୍କୁ ହୁଇସ୍କି ଶେଷ କରି ଉଦ୍ଦାମ ହସି ହସି କହିଲା "ଆବେ, ମୋ ଛାତିରେ ପଗ ଲେଖିଥିଲା ଯୁବତୀ । ତାକୁ ଫୋପାଡ଼ି ଦେଲି । ଆଉ କ'ଣ ପିକ୍‌ନିକ୍‌ର ପିଆଲାକୁ ଠାକୁର ଘରେ ନେଇ ଥୁଅନ୍ତି । ବେଶ୍ ଫୋପାଡ଼ି ଦେଲି । ମନରୁ ମୋର ପାହାଡ଼ ପରିକା ବୋଝଟି ହଠାତ୍ ଖସିଗଲା । ମୁଁ ଆରାମ୍‌ରେ ଗ୍ଲଲିଗଲି ଘରକୁ । ସେଇ ବିଷ ବୋତଲଟାକୁ ଫୋପାଡ଼ି ଦେଲି କଟକରେ ପହଞ୍ଚିଲା ପରେ । ବୁଝିଲ କୁମାର୍ ! ସେଇ କାନ୍ଦିଆ, ତା'ର ଶେଷ ଆବାଜ୍‌ଟି ଏଇ ଚିଲିକାରେ ମିଶିଗଲା ସତ, କିନ୍ତୁ ଏବେ ବି, ମନେହୁଏ, ଯେବେ ଟ୍ରେନ୍‌ରେ ଗଲାବେଳେ, ମୋତେ ସେଇ ଡ଼ାକଟି ଶୁଭେ "ମିତରେ ମିତ !" ।

କିନ୍ତୁ ଇନ୍ଦ୍ରଜିତ୍‌ର ଏମିତି ଏକ କଳଙ୍କିତ ଅତୀତ ଅଛି ତାହା ମୁଁ ଜାଣିନଥିଲି । ଆଉ ମଧ୍ୟ ଜାଣି ନ ଥିଲି ଯେ, ସେଥିନିମିତ୍ତ ସେ ମୋର କୁଟିଆ କଥା ଓ କାହାଣୀର ନିୟମିତ ପାଠକ । ଗୌରହରି ଓ ମୁଁ ପରସ୍ପରଙ୍କୁ ଗ୍ରହିଲୁ । ଆମେ ଦିହେଁ ଅନୁତାପ କରୁଥିଲୁଁ, ଏଭଳି ଏକ ବିଭତ୍ସ ହତ୍ୟାକାରୀର ସାଫଲ୍ୟର ମହୋତ୍ସବର ଆତିଥ୍ୟ ଗ୍ରହଣ କରିଥିବା ଯୋଗୁଁ । ଆମେ ଦିହେଁ ଦେଖୁଥିଲୁଁ, ନିର୍ମଳ ଜହ୍ନକୁ, ଏବଂ ଗୌରହରି ହିଁ ପାଟିକଲା "ହେ କୁମାର, ଦେଖ, ଆଜି ଗ୍ରହଣ, ଜହ୍ନ ଦିହରୁ ଅଧା ଖସିଯାଇଛି ।"

ଡଙ୍ଗାବାଲା ଏଥର କିନ୍ତୁ ଡ଼ଙ୍ଗା ବାହୁଥିଲା ଖୁବ୍ ତରବରରେ । ସମସ୍ତଙ୍କୁ ନିରବ ହୋଇଯିବା ଦେଖି ଇନ୍ଦ୍ରଜିତ୍ କହିଲା "ଦେଖ କୁମାର, ତମେ ସବୁ କବି ଓ କଥାକାର, ଏମିତି ଦୁଃଖ ଦାରିଦ୍ର୍ୟ ଭୋଗ କର କାହିଁକି ଜାଣ ? କାରଣ ପ୍ରେମ ହେଉ, ମଦ ହେଉ, ବା ଭକ୍ତି ହେଉ କି ଶକ୍ତିର ରାଜନୀତି ହେଉ, ତମେ ପାଖରେ ପଡ଼ିଯା'ଅ, । କିଏ ଟିକେ ଛାତିପାତିଦେଲା ତୁମେ ତରଳିଯାଅ, । ନିର୍ବିକାରରେ ଗ୍ଲଇଛି ମୋର ସଂସାର—କାହିଁ କେବେ କାନ୍ତିଆର ଦିହଟିକେ ଗ୍ଲଖିଥିଲି ବୋଲି, ମୁଁ ବି ଓହ୍ଲାଇ ପଡ଼ିଥାଆନ୍ତି,—ଆଭିଜାତ୍ୟର ମହଲରୁ—କଳ୍ପାଟର କୁଟିଆ ଘରେ ?

ଡ଼ଙ୍ଗା ବାଲା ଗୋଟାଏ ଦ୍ୱୀପରେ ଡ଼ଙ୍ଗାଟି ଲଗାଇଦେଲା । ବେଶ୍ ନିର୍ଜନ ସୁନ୍ଦର ଟିକି ଦ୍ୱୀପଟିଏ । ଇନ୍ଦ୍ରଜିତ୍ କହିଲା "ଆରେ, ତୁ ଏଠିକୁ ଆଣିଲୁ କାହିଁକି— ସେଇଟା ପର ଚଢ଼େଇ ହଗା ଆରପଟକୁ—ଆମର ତମ୍ବୁ ମାଲ୍ ମସଲା ପଗ ସେଇଠି ।"

ଡ଼ଙ୍ଗାବାଲା କହିଲା "ବାବୁ ! ଆଜିକି ଦଶବର୍ଷ ଏଇଠି ମୁଁ ରହୁଛି । ମୋର ଟିକି କୁଡ଼ିଆ ଘର, ସେଇଠିକି ଟିକିଏ ଆସନ୍ତୁ, ଘରଟି ଟିକିଏ ଦେଖି ଯାଆନ୍ତୁ ।"

ଇନ୍ଦ୍ରଜିତ୍ ପାଟିକଲା "ଆବେ ମୂର୍ଖ ! ତୋର କୁଡ଼ିଆ ଦେଖିବା ପାଇଁ ଏ କବିମାନଙ୍କୁ ଡାକୁଛୁ । କ'ଣ ଅଛି ସେଇଠି ।"

ଆମେ ଦିହେଁ କିନ୍ତୁ ତା କଥାରେ ସଙ୍ଗେ ସଙ୍ଗେ ବାହାରିଲୁଁ ଦ୍ୱୀପ ପାଖକୁ । ଡ଼ଙ୍ଗାବାଲା କିନ୍ତୁ ଇନ୍ଦ୍ରଜିତ୍‌କୁ ପ୍ରାୟତଃ ଟେକି ଆଣିଲା ଡ଼ଙ୍ଗାରୁ,— ଅତ୍ୟଧିକ ନିଶାରେ ସେ ଆଉ ଗ୍ଲଲିବା ଅବସ୍ଥାରେ ନଥାଏ ।

ଦ୍ୱୀପ ମଝିରେ ସୁନ୍ଦର କୁଡ଼ିଆଟିଏ । ସେଠି ମାଟି ଦୀପଟିଏ ମିଞ୍ଜି ମିଞ୍ଜି ଜଳୁଥାଏ ।ପ୍ରଥମେ ଇନ୍ଦ୍ରଜିତ୍‌କୁ ଡଙ୍ଗାବାଲା ଭିତରକୁ ନେଇଗଲା, ତା'ର ପଛରେ ଆମେ ଦିହେଁ ପଶିଲୁ ।

କୁଡ଼ିଆର ଶାନ୍ତ କୋଠରୀ ମଝିରେ ଗୋଟାଏ ଦଉଡ଼ିଆ ଖଟ । ସେଇଠି ଚିର ହେଂସ ଉପରେ ବସିଥାଏ ସ୍ତ୍ରୀ ଲୋକଟିଏ । କୃଷ୍ଣକାୟା ରମଣୀଟି ଖୁବ୍ ସୁନ୍ଦର ଦେଖା ଯାଉଥାଏ । ହାତରେ କଣ୍ଡାଭଉ, ରୂପାର ବଂଦରିଆ ଓ କଟ୍ରିଆ । ଗଳାରେ ଖୁବ୍ ସୁନ୍ଦର ଖଗଲା ।

ସ୍ତ୍ରୀ ଲୋକଟି ଇନ୍ଦ୍ରଛିତକୁ ଦେଖିଲାକ୍ଷଣି ଏକ ଅଦ୍ ଭୂତ ଆବେଗରେ, ଚିତ୍କାର କଲା "ମିତେ, ମୋର୍ ମିତେ,–ମିତରେ ।"

କିନ୍ତୁ ଖଟରୁ ଉଠିବାକୁ ଚେଷ୍ଟା କଲାକ୍ଷଣି ସେ ପଡ଼ିଗଲା ତଳେ । ଆମେ ଦେଖିଲୁ, ତାର ଗୋଡ଼ ଦୁଇଟି ନାହିଁ । ଆବକ୍ଷ କରୁଣ କାୟାର ମୂର୍ତ୍ତିଟିଏ, ଅବିଶ୍ରାନ୍ତ ଲୁହର ଧାର ଦୁଇ ଆଖିରେ । "ମୁଁଇ ପଡ଼ିଗଲିରେ ମିତେ, ମୁଇଁ ତୋର୍ ଛାଡିରୁ ପଡ଼ି ଗଲି, ଗାଡ଼ି ନେଇଗଲା ତୋତେ– କେତେ ଦୂରକୁ । ମିତେରେ !! ଗୋଡ଼ ମୋର କଟିଗଲା–ପଡ଼ିରହିଲି ସେଇଠି–ଏଇ ମୋର ବୁଆ–ମୋର ବାଆ –ମୋତେ ସାହାଗ ହେଲା–ଗଲା ଦଶ ବରଷ ହେଲା ମୋତେ ଏଠି ରଖିଛେ । ମୋର ବାଆ. ତୋତେ ଖୋଜି ଆଣିଛେ ମୋର୍ ବାଆ–ମୋତେ ନେଇ ଯା ମିତେ– ମୋତେ ନେଇଯା ।"

ଇନ୍ଦ୍ରଜିତ୍ ଚମକି ପଡ଼ି ଚିତ୍କାର କଲେ "ଆରେ କାନ୍ତିଆ,– ତୁ ମରିନୁ– ତଥାପି ବଞ୍ଚିଛୁ । ଆରେ ଡ଼ଙ୍ଗାବାଲା–ଆଣ୍ ଧେଇ ବନ୍ଧୁକ, ଏଇଟା ଏଯାଏଁ ବଞ୍ଚିଛି । ମରିନି, ଏଯାଏଁ ।"

ଡ଼ଙ୍ଗାବାଲା କାନ୍ତିଆକୁ ତଳରୁ ଉଠାଇ ବସାଇଲା ଖଟରେ କହିଲା "ଆରେ କାନ୍ତିଆ ମୁଁ କେତେଥର କହିଚି, କାଗଜପତ୍ରା ବାବୁକୁ କିଛି ବିଶ୍ୱାସ ନାହିଁରେ, ସେ ତୋତେ ଫୋପାଡ଼ି ଦେଇଗଲା– ତୁ ସିନା ବିଶ୍ୱାସ କରୁନୁ ଏବେ ଶୁଣିଲୁ ବାବୁ ଖୋଜୁଛି ବନ୍ଧୁକ ତୋତେ ଖତମ୍ କରିବ ।"

ଏଥର କୁଟିଆ ରମଣୀ କାନ୍ଦିଆ ଲୁହ ପୋଛିଲା ଆଞ୍ଚଳାଏ ହେବ, ଦରଦର ଲୁହ ପୋପାଡ଼ି ଦେଇ, ଆଗକୁ । ଇନ୍ଦ୍ରଜିତ ଆଡକୁ ଚାହିଁ କହିଲା "ମିତେ,—ତୁଇ-ମଚେ ଠକିଲୁରେ ମିଚେ, ତୁଇ ମିଛରେ ମୋତେ ବାହାହେଲୁ । ଖଗଲ ଦେଲୁ, ତେଙ୍କରେ, ମୁଁ, ତୋ'ର କି ଦୋଷ କଲିରେ ମିତେ, ବାଉଁଶ ହାଣିଲା ଭଳି, ହାଣିଦେଲୁ ମୋର ସଂସାର—ନାଇଁରେ ମିତେ, ମୁଇଁ ତତେ ଛାଡ଼ିବି ନାହିଁ-ମୋ ସାଥୀରେ ତୋତେ ନେମିରେ ମିତେ, ତୁ ମୋ ସଙ୍ଗରେ ଯିବୁ । ଏଇ ନେଇଯାଆ ତୋର ଖଗଲ ।"

ସେତିକି ବେଳକୁ ତାର ଆଖିରୁ ଖସୁଥାଏ ପ୍ରତିହିଂସାର ଅଗ୍ନି । ବେକରୁ ଖଗଲକୁ କାଢି, ଦୁଇ ହାତରେ ଖୁବ୍ ଜୋର୍‌ରେ ଓଟାରି ଦେଲା, ଯେମିତି ତାହା ଦୁଇ ଭଗ ହୋଇଗଲା, ମଝିରେ ଠିକ୍ ମିଞ୍ଜିମିଞ୍ଜି ଦୀପ ତଳେ ଖସିଲା, ଝଲସି ଉଠୁଥିବା ଚିଙ୍କଟିଏ ।

ଚିଙ୍କଟିକୁ ହାତକୁ ନେଇ, କପାଳରେ ଥୋଇ ରମଣୀ, ତଳେ ଗଡ଼ିଆସି, ଆମକୁ କହିଲା "ଆରେ, ନେଇଯାଆ ସେଇ ବାବୁମାନଙ୍କୁ, ଏ ତା ପାଇଁ ସେମାନେ ମରିବେ କିଆଁ—ଜଲଦି ଯାଆରେ ବାଆ—ଆଉ ଆସିବୁନି,—ଏଇ ଘଡ଼ିକେ ଏ ମିତ ନଥିବ, ମୁ ବି ନଥିବି— ପଳେଇ ଯାଆରେ ବାଆ ।"

ଡ଼ଙ୍ଗାବାଲ ମୋତେ ଓ ଗୌରହରିଙ୍କୁ ତଡ଼ିତ ଓଟାରି ଆଣିଲା ଡ଼ଙ୍ଗାକୁ । ପଛରୁ ଇନ୍ଦ୍ରଜିତ୍ ଖୁବ୍ ଜୋର୍‌ରେ ଚିତ୍କାର କରୁଥାଏ "ମୋ ବନ୍ଧୁକ ଦେଏରେ ମୋ ବଂଧୁକ ।"

ଘୋସାଡ଼ି ହୋଇ କାନ୍ଦିଆ କୁଡ଼ିଆ ବାହାରକୁ ଚାଲିଆସି, ଖୁବ୍ ଜୋର୍‌ରେ ହସିଲା । ଆକାଶରେ ଜହ୍ନକୁ ଗ୍ରହଣ ଅଧା ଖାଇ ଯାଇଥାଏ ଆକାଶକୁ ଦେଖିଲା । ମାଟିରୁ ମୁଠାଏ ନେଇ ସେଇ ଖଗଲର 'ମେଦା' ସହ ଫିଙ୍ଗି ଦେଲା, ଇନ୍ଦ୍ରଜିତ୍‌ର ଦିଗରେ ।

ହଠାତ୍ ସଁ ସଁ ଶୁଭିଲା ଚାରିଦିଗରୁ । କେଉଁଠି ଥିଲେ କେଜାଣି, ଚାରିଦିଗରୁ ଫଣା ଟେକି ଚହଟି ଆସୁଥିଲେ ମାଳମାଳ ସାପ । ଘଡ଼ିକେ ଆମେ ଦେଖିଲୁ' ଇନ୍ଦ୍ରଜିତ୍‌ର ଗୋଡ଼, ହାତ, ମୁଣ୍ଡଯାଏଁ, ଗୁଡେଇ ହୋଇଗଲେ ସାପ । ତା'ର

ମୁଣ୍ଡ ଭଇଯାଏଁ ଘେରି ଗଲେ ସାପ । ଇନ୍ଦ୍ରଜିତ୍‌ର ଚିତ୍କାର ଆଉ ଶୁଭିଲା ନାହିଁ । ଡ଼ଙ୍ଗାବାଲା ଖୁବ୍ ତରବରରେ ଘେନି ଆସିଥିଲା ଡ଼ଙ୍ଗା ରମ୍ଭା ତଳକୁ ।

ଏଇ ଘଟଣାର ଦୁଇ ବର୍ଷ ପରେ ଏବେ ଥରେ, ଇନ୍ଦ୍ରଜିତ୍‌ର ପୁଅ ଆମକୁ ସେଇ ଦ୍ୱୀପକୁ ନେଇଯାଇ ଥିଲେ, ତାର ପିତାର ଶ୍ରାଦ୍ଧ ପୂର୍ଣ୍ଣମୀରେ । ଖୁବ୍ ସୁନ୍ଦର ସ୍ମୃତି ମନ୍ଦିରଟିଏ ଏବେ ସେଠି ଶୋଭା ପାଉଛି । ସୁନ୍ଦର ମାନାଙ୍କର ଅକ୍ଷରରେ, ସେଠି ଖୋଦେଇ ହୋଇଛି, ଇଂରଜୀରେ ଇନ୍ଦ୍ରଜିତ୍ ତାର ଡ଼ାଏରୀ ଟିପି ରଖିଥିବା ସେଇ କୁଟିଆ କବିତାର ଇଂରଜୀ ଅନୁବାଦ—

"Thou shall kill the Tigers
With thy Axes
Snakes with thy Sticks
If scratching sting kills thy Pride
Better make a bear thy Bride
But, If all these four in equal
Furore, In a Fiancy Lurks.
No Axe, No Stick, No Love can
Discern, The Honey she offers
in the Hamlock."




ତେରେ
ବାହାଲର
ତାହାଲ୍

ଲିଖା ସଂଅଁର ଜାତିରେ ଶବର । ଆମ ଗାଁ ମୁଣ୍ଡରେ ଝାଟିମାଟିର ଟିକି କୁଡ଼ିଆ ଘରଟିରେ ତାର ସ୍ତ୍ରୀ ଛୋଟୀ ସାଉଁରଣୀ ସହ ରହୁଥାଏ । ଲିଖାଥିଲା ଅତ୍ୟନ୍ତ ସ୍ୱାଧୀନ ଚେତା । ଗାଁର ଅନ୍ୟ ଆଦିବାସୀଙ୍କ ଭଳି ସେ କେଉଁଠେ ହଳିଆ ହୋଇ ନଥିଲା, ବା ମୂଲ ଲଗୁ ନଥିଲା । ଏହି ସ୍ୱାଭିମାନ ପଛରେ ଥିଲା ତା'ର ବଂଶ ପରଂପରା । ତା'ର କହିବାନୁସାରେ, ତାର ବାପା ଫପୁ ସାଉଁର ଥିଲା ମହାରଜାଙ୍କର ପାଟ ଶିକାରୀ ଏବଂ ରାଜ୍ୟରେ କେବେ କେଉଁଠି ହିଂସ୍ର ଜନ୍ତୁଙ୍କ ବିସ୍ତୃତ ବଳି ପଡ଼ିଲେ ମହାରଜାଙ୍କ ଆଦେଶରେ ଧନୁଶରରେ ହିଂସ୍ର ଜନ୍ତୁଙ୍କୁ ହତ୍ୟାକରି ରଜାଙ୍କୁ ଭେଟି ଦେଉଥିଲା । ସେଇ ସୂତ୍ରରେ ଏଇ 'ଚେରେବାହାଲ' ବା 'ପକ୍ଷୀପୁର' ଗ୍ରାମଟି ତା'ର ବାପା ଗାଉଁତି ହୋଇଥିଲା । ପରେ ଅବଶ୍ୟ ସବର୍ଣ୍ଣ କୋଲତା ଆସି ମାରପେଞ୍ଚରେ ତା'ର ଗାଉଁତି ନେଇଗଲେ ସେ ଏକ ଭିନ୍ନ କଥା । ତେବେ 'ଚେରେ' ଅର୍ଥ ପକ୍ଷୀ ଏବଂ କୌଣସି ଉଦାର ମହାରଜା, ଫପୁ ଶବରର ପକ୍ଷୀ ଶିକାରରେ ମୁଗ୍ଧ ହୋଇ ଗ୍ରାମଟିର ଗାଉଁତି ଦେଇଥିବା ବେଶୀ ବିଶ୍ୱାସ ଯୋଗ୍ୟ କାରଣ ସଂପୁର ପୁଅ ଲିଖା କେବଳ ପକ୍ଷୀ ଶିକାର ହିଁ କରେ । ଏଇନା ଶିକାର ପାଇଁ କେତେ ମାରଣାସ୍ତ୍ର ବାହାରିଲାଣି, କିନ୍ତୁ ଲିଖା ସେଇ ବାପ ଅମଳର ଦୀର୍ଘ ଧନୁଟିରେ ବର୍ଷକୁ ଥରେ ଗୁଣ ବଦଳାଇବା ବ୍ୟତୀତ ଆଉ କିଛି ଅଧିକ କରି ନାହିଁ । ଲିଖା ସାଧାରଣତଃ ପ୍ରାତଃ କାଳରେ ଶିକାର କରେ । ରାତି ଅଧରୁ ବାହାରିଯାଏ, ଦଶଟା ବେଳକୁ ଜଙ୍ଗଲରୁ ଫେରେ । କାନ୍ଧରେ ଝୁଲୁଥାଏ ଗଣ୍ଡାଏ ହରଡ଼ ଚଢ଼େଇ, କୋଚିଲ ଖାଇ ଓ ଅର୍ଦ୍ଧମୃତ ଅନେକ କପୋତ ।

ଏଇ ଅବସ୍ଥାରେ ଆମ ଗାଁର ତିହାଡ଼ି ପଣ୍ଡିତେ ଲିଖାକୁ ଦେଖିଲକ୍ଷଣି ଜିଜ୍ଞାସୀ ହୁଅନ୍ତି । ଆପେ ଆପେ ତାଙ୍କ ପାଟିରୁ "ମାନିଶାଦ" ଶ୍ଳୋକଟି ଉତୁରି ଆସେ । ତେବେ ଲିଖାକୁ ଦେଖିଲେ ତିହାଡ଼ିଙ୍କ ସ୍ତ୍ରୀ ପଣ୍ଡିତଙ୍କୁ ଆଡ଼େଇ ହୁଙ୍କି ଆସନ୍ତି, ଆଗକୁ । ଦିଗଘାତ ସାରସଙ୍କ ମୂଲଚୁଲ କରିବାରେ ପଣ୍ଡିତିଆଣି ବଡ଼ ପଟୁ ।

ଲିଖାର ମଧ୍ୟ ଦୁର୍ଦ୍ଦିନ ଆସିଲା । ଦିନେ ଗୋଟିଏ ସୁଉଚ୍ଚ ଶିମୁଳୀ ଗଛର ଶିଖରେ ବସା ବାନ୍ଧିଥିବା କୋଚିଲା ଖାଇକୁ ଲକ୍ଷ୍ୟକରି ଲିଖା ତୀର ଛାଡ଼ିଦେଲା । ତୀରଟି ପକ୍ଷୀ ଦିହରେ ବାଜିଥିଲା ଏବଂ ଅସହାୟରେ ଖସି ପଡୁଥିବା ପକ୍ଷୀକୁ ଲିଖା ଉପରେ ଧରିନେବା ପାଇଁ ଦୁଇହାତ ପ୍ରସାରଣ କରିବାକ୍ଷଣି, ପକ୍ଷୀ ସହ ଖସି ଆସିଥିଲା ଦୀର୍ଘକାୟ ଅଜଗରଟିଏ । ସମ୍ଭବତଃ ସେଇ ସମୟରେ ହିଁ ଅଜଗର ପକ୍ଷୀକୁ ଆକ୍ରମଣ ପାଇଁ ବସାରେ ପହଞ୍ଚି ଯାଇଥିଲା । ତତ୍‌କ୍ଷଣ ଅଜଗର ଲିଖାର ଦୁଇହାତରେ ଗୁଡ଼େଇ ବାରମ୍ବାର ଦଂଶନ କରିଥିଲା ।

ଲିଖା ବିକଳରେ ଦଉଡ଼ିଥିଲା ନିକଟସ୍ଥ ଗ୍ରାମକୁ । ହଳାହଳ ବିଷ ସଂଚରଣରେ ସେ ମୁମୂର୍ଷ ଅବସ୍ଥାରେ ଡ଼ାକ୍ତରଖାନା ଗଲା, ବୁହାହୋଇ । ଡ଼ାକ୍ତର ବାବୁ ତା'ର ଜୀବନ ରକ୍ଷା କରି ଦେଲେ ସତ କିନ୍ତୁ ତା'ର ଜିବୀକା ସହାୟକ ହାତଦ୍ୱୟର ପାପୁଲିକୁ ରକ୍ଷା କରିପାରି ନଥିଲେ । ଦୁଇହାତ ଥୁଣ୍ଟା ଲିଖା ଯେଉଁଦିନ ଡାକ୍ତରଖାନାରୁ ଫେରିଲା, ଗାଁ'ର ସମସ୍ତଙ୍କ ପାଟିରେ ଗୋଟାଏ ଶବ୍ଦ "ଆଃହା" ଏଭଳିକି ତିହାଡ଼ି ପଣ୍ଡିତେ ମଧ୍ୟ ତାକୁ ଦେଖିବାକୁ ଯାଇଥିଲେ, କୁଡ଼ିଆକୁ । ସହସ୍ର ପକ୍ଷୀଙ୍କର ଘାତକ ପାଇଁ ତାହାହିଁ ଥିଲା ନିୟତିର ନିଷ୍ଠୁର ନିଧାନ ।

ତା'ପରେ ଲିଖାମାଝି ଛୋଟୀ ସାଉଁଗଣୀ ଉପରେ ସମ୍ପୂର୍ଣ୍ଣ ବୋଝ ହୋଇଗଲା । ଛୋଟୀ ସାଉଁଗଣୀ ଗୋଟାଏ ଗୋଡ଼ରେ ପୋଲିଓ, ତେଣୁ ଛୋଟାଇ ଛୋଟାଇ ଚାଲେ । ଏବେ ସେ ଚୁଡ଼ା କୁଟିବା ଆରମ୍ଭ କରିଦେଲା । ରାତିରେ ସମସ୍ତେ ଶୋଇଯାଆନ୍ତି, କିନ୍ତୁ ହୃଦୟର ଦୁକଦୁକି ଭଳି, ଛୋଟୀର ଚୁଡ଼ା କୁଟାର ଆବାଜ୍ ରାତି ସାର ଶୁଭୁଥାଏ । ସକାଳ ହେବାକ୍ଷଣି, ଗୋଟାଏ ଦୁଇଟି ଗାଁ ବୁଲି ଛୋଟୀ ସାଉଁଗଣୀ, ଚୁଡ଼ା ବିକେ ଏବଂ ବିଚରା ଲିଖାକୁ ଚଳାଇନିଏ ।

ସେଇ ସମୟରେ ଛୋଟୀ ସାଉଁଗଣୀ ଚୁଡ଼ାର ମୁଁ ଥିଲି ଜଣେ ପ୍ରତିଦିନିଆ ଗ୍ରାହକ ।

ସପ୍ତମ ଶ୍ରେଣୀରେ ଗଣିତ ମାଷ୍ଟରଙ୍କ ଡ଼ରରେ ମୁଁ ସେତେବେଳେ ସ୍କୁଲ୍ ଯିବା ପ୍ରାୟ ଛାଡ଼ିଦେଇଥାଏଁ । ସକାଳୁ ଉଠି ଗାଁ'ର ପୋଖରୀ ହୁଡାରେ ରଙ୍ଗ-

ବେରଙ୍ଗୀ କଂକୀ ଧରିବା ମୋର ହିଁ କାମ । ଭେକ ହେଲେ ଧାନ ପୁଡ଼ାରୁ ଗାମୁଛାରେ ଅଡାଏ ଧାନ ନେଇ, ଛୋଟୀ ସାଉଁଉଣୀ ପାଖକୁ ଗଲେ, ତା' ବଦଳରେ ଶୋଲାଏ ଚୁଡା ମାପିଦିଏ । ସେହି ଅବସରରେ ଲିଖା ଠାରୁ ବଣ ଜଙ୍ଗଲର ପଶୁପକ୍ଷୀଙ୍କର ସମ୍ବନ୍ଧରେ ଅନେକ ଚମତ୍କାର କାହାଣୀ ଶୁଣାହୁଏ । ମୋ ମନରେ କିନ୍ତୁ ଅନ୍ୟ ଏକ ମଂଦ ଉଦ୍ଦେଶ୍ୟ ଥାଏ, ଯାହାକି ଚରିତାର୍ଥ ହୋଇପାରି ନ ଥିଲା । କଥାଟି ହେଲା ଲିଖା ଏବେ ଆଉ ଶିକାର ଯାଏନା କିନ୍ତୁ ସେଇ ଦୀର୍ଘ ଧନୁ ଏବଂ ଚକଚକିଆ ମୁନିଆ ଶର ଏବେ ବି ତା'ର କୁଡ଼ିଆ ବାରଣ୍ଡାରେ ଝୁଲୁଥାଏ । ଇଚ୍ଛା ହୁଏ, ତାକୁ ମାଗିଆଣି ଜଂଗଲରେ ଶିକାର କରନ୍ତି । କିନ୍ତୁ ଲିଖା ସେଇ ଧନୁ ତଳେ ଗୋଟାଏ ଛିଣ୍ଡା ଖଟ ଉପରେ ନିସହାୟରେ ଶୋଇଚହି ଧନୁଶରକୁ ଏମିତି ନିର୍ଣ୍ଣି ମେଷ ଆଖିରେ ଗ୍ରହିଁଥାଏ ଯେ, ସାହସ କୁଳାଏ ନାହିଁ, ଚିଜଟିକୁ ମାଗିବାକୁ ।

କିନ୍ତୁ ବିଚରା ଲିଖା ମାଝିର ଜୀବନରେ ଏକ ବିରଟ ସଙ୍କଟ ଆସି ପହଞ୍ଚିଲା । ହଠାତ୍ ଛୋଟୀ ସାଉଁରଣୀର ଆଉ ଏକ ଗୋଡ଼ ପାରଲିସିସ୍‌ରେ ପଡ଼ିଗଲା । ସନ୍ତାନ ଶୁନ୍ୟ ଲିଖାର ଛୋଟୀହିଁ ଥିଲା ସବୁକିଛି । ଏବେ ଛୋଟୀ, ସମ୍ପୂର୍ଣ୍ଣ ଅଚଳା ହୋଇଯିବା ପରେ, ସ୍ଵାଭିମାନୀ ଲିଖା ପ୍ରଥମ ଥର ପାଇଁ ଦ୍ଵାର ଦ୍ଵାର ବୁଲିଥିଲା ଭିକ୍ଷାପାଇଁ । ଅବଶ୍ୟ ସେ ଭିକ୍ଷା ପାଇଁ କହେ ନାହିଁ, ଗାଉଁଡିଆ ଘର ମାନଙ୍କ ସାମ୍ନାରେ ବିକଳରେ ଛିଡ଼ା ହୁଏ । ଜାଣିଥିବା ଲୋକ, ତା'ରି ଅଣ୍ଟା ବନ୍ଧା କପଡ଼ାରେ ଢ଼ାଳି ଦିଅନ୍ତି ମୁଠାଏ ମୁଠାଏ ଚାଉଳ । ଲିଖା ଫେରିଯାଏ ।

ମୁଁ ସେ ସମୟରେ ଭବେ ଲିଖା ଛିଣ୍ଡା ଲେଙ୍ଗୁଟିରେ ଭିକ୍ଷାନିଏ ସିନା, ଥୁଣ୍ଟା ହାତରେ ରୋଷାଇ କରେ କେମିତି, ଖାଏ କେମିତି ?? ଏହି ରହସ୍ୟ ଉଦ୍‌ଘାଟନ ପାଇଁ ମୋତେ ବେଶୀ ସମୟ ଲାଗି ନଥିଲା ।

କଂକୀ ଧରିବା ବାହାନାରେ ଦିନେ ଘଡ଼ିଏ ଯାଏଁ ଲିଖା କୁଡ଼ିଆ ନିକଟରେ ଜଗିରହି ତାକୁ ଲକ୍ଷ୍ୟ କଲି । ଦେଖିଲି, ଲିଖା ଛୋଟିକୁ କୋଳକୁ ଟେକି ନେଉଛି, ଛୋଟୀ ହାତ ହଲାଇ, ଚାଉଳ ପକାଉଛି, ଲିଖା ଥୁଣ୍ଟା ହାତରେ ଚୁଲିରେ କାଠ ଦେଉଛି । ଲିଖାକୁ ଛୋଟୀ ଖୁଆଇ ଦେଉଛି, ମୁହଁ ପୋଛି ଦେଉଛି, ପଣତରେ । ସେଇ ଅଦ୍ଭୂତ ପରିପୂରକ ଦୁଇପ୍ରାଣୀ, ତାଙ୍କର ସେଇ ମୁହୂର୍ତ୍ତର ଅନ୍ତରଙ୍ଗ

ଜୀବନଦୃଶ୍ୟ ମୋର ଏ ଯାଏଁ ଦେଖିଥିବା ଦାମ୍ପତ୍ୟ ଜୀବନର ସର୍ବଶ୍ରେଷ୍ଠ ଦୃଶ୍ୟ ।

ମୋର ଆଉବି ମନେ ଅଛି, ମୋର ଜେଜେମାଆ ଯେତେବେଳେ ବୃଦ୍ଧାବସ୍ଥା ଯୋଗୁଁ ଖଟରେ ପଡ଼ିଗଲେ, ଏଇ ଛୋଟୀ ସାଉଁଗଣୀ ହିଁ ତାଙ୍କର ଲୁଗାପଟା ସଫା କରି ଦେଉଥିଲା, ଏକ ଦୂଇରେ ସାହାଯ୍ୟ କରୁଥିଲା । ଉପରବାଲା ପଡ଼ିବା ଦେଖିଲେ ତଳଲୋକ ହାତଟେକି ସାହାଯ ହୁଅନ୍ତି, କିନ୍ତୁ ତଳଲୋକର ଗୋଡ ଖସିଲେ, ତା'ର ସହାୟ କେହି ନଥାଏ । ଉପରବାଲା ତ ତଳ ଲୋକ କଥା ମୋଟେହିଁ ଚିନ୍ତା କରନ୍ତି ନାହିଁ ।

କିନ୍ତୁ ସେହି ନିରୀହ ନିସ୍ବ, ଦୁଇ ପ୍ରାଣୀଙ୍କର ଦାମ୍ପତ୍ୟର ଶେଷଦିନ ଆସି ଯାଉଥିଲା ।

ମାର୍ଗଶୀର ମାସର ଗୁରୁବାର । ସେଦିନ ଘରେ ଘରେ ପିଠାପଣା । ସକାଳୁ ସକାଳୁ ଦେଖାଗଲା ଲିଖା କାନ୍ଧରେ ଛୋଟୀ ସାଉଁଗଣୀକୁ ବୋହି ଗାଁ ଦାଣ୍ଡରେ ଗ୍ଭଲିଛି । କଳା ମଚ ମଚ ଲିଖା, କାନ୍ଧରେ ସିଧା ସଳଖରେ ଶୁଖି ଯାଇଥିବା ଛୋଟୀର ଶବ, ହାତ ଦୁଇଟି ତଳକୁ ଓହଳିଥାଏ । ରସ୍ତା କଡର ପାଚିଲା ଧାନ କେଣ୍ଡାରେ ଛୋଟୀର ହାତ ଆଉ ଆଲୁର ଓହଳା କେଶ ବେଳେ ବେଳେ ଛନ୍ଦି ହୋଇ ଯାଉଥାଏ । ଲିଖା କିନ୍ତୁ ଗ୍ଭଲିଥାଏ, ବଡ଼ ବଡ ପାହୁଣ୍ଡରେ, ଗାଡ଼ ନିରବ-ତାରେ, ଗହୀର ବିଲ ଦେଇ ଲମ୍ବି ଯାଇଥିବା କାଦୁଆ ରସ୍ତାରେ, ନଈ ଘାଟ ଆଡକୁ ।

ଲିଖା ନଈ ପାଟରେ ଓହ୍ଲାଇ, ନିର୍ମଳ ନଦୀ ସ୍ରୋତରେ ଭସାଇ ଦେଲା । ଥୁଣ୍ଟା ହାତରେ ଆକଟ ନମାନି, ଛୋଟୀର ଶରୀର ଟାଣି ହୋଇଗଲା ଗଭୀର ଧାର ଆଡ଼କୁ । ଆଣ୍ଠୁଏ ପାଣି ଭିତରେ ଛିଡ଼ା ହୋଇ ଲିଖା ପୁଣି ଥରେ ନିଘାକଲା ସ୍ରୋତସ୍ୱିନୀ ନଦୀକୁ । ଲିଖାର ଆଖିରେ ନାଚି ଉଠୁଥିଲା, ଛୋଟୀ ସାଉଁଗଣୀର ପ୍ରଥମ ମିଳନ ମୁହୂର୍ତ୍ତ ମାନ, କର୍ଲାପାଟ ଜଙ୍ଗଲର କେର୍କେଟା ସାଉଁଗର ଧାଙ୍ଗଡ଼ି ଝିଅର ଫୁଲଫୁଟା ଶରୀର ଓ ତାର ମହକ ।

ହଠାତ୍ ନଈ ମଝିରେ ଗୋଟାଏ ଶବ୍ଦ ହେଲା । ଲିଖା ଚମକି ପଡ଼ି ଦେଖିଲା ଗୋଟାଏ ଅତିକାୟ ଅସୁରଭଳି ଧଳା ପକ୍ଷୀଟିଏ ଝାମ୍ପି ନେଇ ଯାଉଛି ସୁଅ

ମଝିରୁ ଛୋଟୀର ଶରୀରକୁ । ଛୋଟୀ ବିହର ଶେଷ କଷ୍ଟା କରିଆ ପାଣି ଉପରକୁ ଉଠିବା ବେଳେ ଖସି ପଡ଼ିଲ ଠିକ୍ ଲିଖାର ମୁହଁରେ । ଲିଖା ବିକଳ ଚିତ୍କାରଟାଏ କଲ "ମୋ ଛୋଟୀରେ ଏ ଛୋଟୀ" । କିନ୍ତୁ ଦୂର ଦିଗନ୍ତର କର୍ଲାପାଟ୍ ପାହାଡ ଶିଖର ଆଡ଼େ ନୀଳ ଆକାଶରେ ନିଭି ଯାଇଥିଲ ପକ୍ଷୀ ।

ଲିଖା ଫେରୁଥିଲା ଗାଁଆକୁ । ବାଟରେ ପଡ଼ିଲା ସେଇ ଶିମୁଳୀ ଗଛ, ଯେଉଁଠି ସାପ କାମୁଡ଼ାରେ ହରଇଥିଲା ଦୁଇଟି ପାପୁଲି । ଲିଖା ଅୁଣ୍ଡା ହାତ ଦୁଇଟିକୁ କପାଳ ଉପରେ ଥୋଇ ସେଇ ଶିମୁଳୀ ଗଛ ନିକଟରେ କିଛିକ୍ଷଣ ବସି ଦେଖୁଥିଲା, ପାଚିଲା ଧାନକ୍ଷେତଙ୍କର ଗହଳୀ ଏବଂ ଦୂରରେ ଦୃଶ୍ୟମାନ କର୍ଲାପାଟ ପାହାଡ଼ର ଦୁଇଟି ତ୍ରୀଭୂଜୀୟ ଶୃଙ୍ଗ । ଲିଖା ହଠାତ ଶୁଣିପାରିଲା ଏକ ସାଇଁ ସାଇଁ ଶବ୍ଦ । ସେଇ ପାହାଡ଼ ଶିଖର ଆଡୁହିଁ ଆସୁଥାଏ । ଲିଖା ଭବିଲା ଉଡ଼ାଜାହାଜଟିଏ ହବପଗ । କିନ୍ତୁ ଟିକିଏ ନିଘା କରି ଦେଖିଲା ସେଇ ପାହାଡୀ ଶୃଙ୍ଗ ପାଖରୁ ଗୋଟାଏ ବିଶାଳକାୟ ପକ୍ଷୀ ଆକାଶକୁ ଉଠୁଛି । ପକ୍ଷୀଟି, ସେଇ ଶିମୁଳୀ ଗଛ ଉପରେ ଚକ୍ରାକାରରେ ଉଡ଼ିବାକୁ ଲାଗିଲ । ଲିଖା ଜୀବନରେ ଏମିତି ବିଗଟ ଚଢ଼େଇ କେଉଁ ଦେଖିନଥିଲା । ଚକ୍ରାକାରରେ ଘୁରୁଥିବା ଚଢେଇର ଚଞ୍ଚୁଟି ସାତଫୁଟ ସରିକି, ସୁନାପାତିଆ ଭଳି ଆକାଶରେ ଚକ୍ ଚକ୍ କରୁଛି । ଗୁରିଦିନ ହେବ ଓପାସରେ ଥିବା ଲିଖାର ମୁଣ୍ଡ ଚକ୍ରଭଳି ଘୂରିବାକୁ ଲାଗିଲା । ଆପେ ଆପେ ଘୋଷାଡ଼ି ହୋଇ ଧାନକ୍ଷେତ ଭିତରକୁ ଫୋପାଡ଼ି ହୋଇ ଗଡ଼ିପଡ଼ିଲା ଲିଖା ।

ଏ ସମୟରେ ଚକ୍ରାକାରରେ ଘୁରୁଥିବା ପକ୍ଷୀଟି ମଧ୍ୟ ଆକାଶରୁ ଖସିବାକୁ ଆରମ୍ଭ କଲା ଠିକ୍ ଲିଖା ଆଡକୁ ପକ୍ଷା ମେଲି । କିନ୍ତୁ ହଠାତ୍ ଶିମୁଳୀ ଗଛର ଖୁଣ୍ଟିଲା ଶାଖାରେ ପ୍ରଚଣ୍ଡ ବେଗରେ ବାଡେ଼ଇ ହୋଇ, ଏକ ବିଗଟ ଶବ୍ଦ ସହ ପକ୍ଷୀଟି ଖସିଲା ଠିକ୍ ଲିଖା ସମ୍ମୁଖ ପାଖରେ ।

ଲିଖା ଚମକି ପଡ଼ି ବିଲ ମଝିକେ ଛିଡ଼ା ହୋଇ ଦେଖିଲା । ସମ୍ମୁଖରେ ତାର ମୁଣ୍ଡ ଉଚ୍ଚର ଧଳା ଫରଫର ପକ୍ଷୀପର । ପକ୍ଷୀଟିର ପକ୍ଷ ସାତଫୁଟ ସରିକି ଚଞ୍ଚୁଟି ନିକଟରୁ ଦେଖିଲ ଶଗଡ଼ ସରିକି ଦିପାଖ । ପାଟି ଆଁ ଆଁ କରି ଦେଲେ

ତା'ଭଳି, ଦୁଇଟି ପ୍ରାଣୀ ଚେଙ୍ଗମାଛ ଭଳି ପଡ଼ିଯିବେ । ଲିଖା ବିକଳରେ ଟିକିଏ ଘୁଞ୍ଚିଯାଇ ପୁଣି ପକ୍ଷୀଟିକୁ ଚାହିଁଲା । ପକ୍ଷୀଟି, ଥଣ୍ଟ ଟେକିଲା ଯେମିତି ସାତ ଫୁଟ ଦୂରରେ ଥିବା ଲିଖାର ମୁଣ୍ଡ ପାଖକୁ ଲମ୍ବିଗଲା, କିନ୍ତୁ ପରକ୍ଷଣରେ ଥଣ୍ଟଟି ପଛକୁ ଫୋପାଡ଼ି ପକ୍ଷୀଟି ଆପଣା ବାମ ଡେଣାକୁ ଖୁଂପିବାକୁ ଲାଗିଲା ।

ଲିଖା ଦେଖିଲା ସେଇ ଡେଣା ଦିହରୁ ପଚ୍ ପଚ୍ ରକ୍ତର ଧାର ଛୁଟି, ଧଳା ଧଳା ପର ସବୁ ଲାଲ୍ ହୋଇ ଯାଇଛି । ଆଉ କିଛିକ୍ଷଣ ପରେ ପକ୍ଷୀଟି ଅସହାୟରେ ଥଣ୍ଟ ମୋଡ଼ି ବିଲ ମାଟିରେ ଗୋଟାଏ କଡ଼କୁ ଖସି ପଡ଼ିଲା । ଲିଖା ଦଉଡ଼ିଯାଇ ଦେଖିଲା, ବାମଡେଣାରେ ଶିମୁଳି ଗଛର ମାଡଯୋଗୁଁ ପକ୍ଷୀଟି ମୁର୍ଚ୍ଛାଯାଇଛି । ଥଣ୍ଟକୁ ଗୋଟେ କଡ଼କୁ ଟେକିବାକୁ ଚେଷ୍ଟା କଲା କାନ୍ଧରେ । ବହୁତ କଷ୍ଟରେ ତାକୁ ବାମଡେଣାରୁ କାଢ଼ି ସିଧା କରି ଥୋଇଦେଲା ଏବଂ ସେକ୍ଷଣି ଦଉଡ଼ିଲା ନଈ ପଠାକୁ । ପଠାରୁ ଆପଣା ଦାନ୍ତରେ ଓପାଡ଼ି ଅଣ୍ଟାରେ ଥୋଇଲା କେଇବୋଝ ଚେର ଓ ମୂଳ ।

ପକ୍ଷୀ ନିକଟକୁ ଫେରିଆସି ପାଟିରେ କାମୁଡ଼ି କାମୁଡ଼ି ସେଇ ଚେର ସବୁକୁ ଘସିଲା ରକ୍ତାକ୍ତ କ୍ଷତ ସ୍ଥାନରେ । କେଇ ସମୟ ପରେ ପୁଣି ପକ୍ଷୀଟି ସଚେତ ହୋଇ ଥଣ୍ଟ ଉଠାଇଲା, ଏବଂ ବଡ କଷ୍ଟରେ କେବଳ ଦକ୍ଷିଣ ପକ୍ଷହିଁ ପ୍ରସାରଣ କରି ପାରିଥିଲା । ବିଚରା ଲିଖା, ଏଥର ପକ୍ଷୀର ଗୋଡ଼ତଳେ ପଡ଼ିଯାଇ 'ଭେଁ' ଭେ କାନ୍ଦିବାକୁ ଲାଗିଲା । ସେ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା "ହେ ପ୍ରଭୁ ବିହଙ୍ଗରାଜ ଗରୁଡ ! ମୋତେ କ୍ଷମାକର ! ମୁଁ ତମର ପକ୍ଷୀ ବଂଶକୁ ବିନାଶ କରୁଥିଲି, ମୁଁ ତୁମର କୂଳ ଶତ୍ରୁ, ମୋତେ କ୍ଷମାକର ପ୍ରଭୁ ! କ୍ଷମାକର !"

ପକ୍ଷୀ କିନ୍ତୁ କୌଣସି ହିଂସା ପ୍ରଦର୍ଶନ ନ କରି ବିକଳରେ ଲିଖାକୁ କୃତଜ୍ଞରେ ଅନାଇ ରହିଲା । ଲିଖା ଯେମିତି ଗାଁ ଆଡକୁ ଫେରିଛି, ପକ୍ଷୀଟି ମଧ୍ୟ ବିକଳରେ ଉଠି, ଥିରି ଥିରି ଲିଖାକୁ ଅନୁସରଣ କଲା । ଲିଖା ଚାଲିଛି ଆଗରେ, ପଛରେ ଚାଲିଛି, ଶ୍ୱେତସୁନ୍ଦର ବିହଙ୍ଗରାଜ । ଗାଁ ମୁଣ୍ଡରେ ଯେମିତି ଲିଖା ପହଞ୍ଚିଲା, ଦୂରରୁ ଏମିତି ଏକ ଅଦ୍ଭୁତ ବିଶାଳକାୟ ପକ୍ଷୀକୁ ଗ୍ରାମବାସୀମାନେ ଏକ ପିଶାଚିକ ପ୍ରାଣୀ ମନେ କରି କବାଟକିଳି ଯେ ଯାହାର ଘରେ ଲୁଚିଗଲେ ।

ଗାଁ ଦାଣ୍ଡରେ କଂକୀ ଧରୁଥିବାବେଳେ, ମୁହିଁ ଏପରି ଏକ ବିସ୍ମୟାକାର ପକ୍ଷୀ ସହ ଫେରୁଥିବା ଲିଖା ପାଖକୁ ଦଉଡ଼ି ଯାଇଥିଲି । ପକ୍ଷୀକୁ କିଛି ବିଘ୍ନ ନ ଘଟାଇବା ପାଇଁ ସତର୍କ କରି ଲିଖା ଚୁପ୍ ଚୁପ୍ ତାର କୁଡ଼ିଆ ପାଖକୁ ପକ୍ଷୀସହ ଆସିଲା ।

ମୋତେ ପକ୍ଷୀ କିଛି କ୍ଷତି କରୁନି ଦେଖି ଗାଁର ସମସ୍ତ ଲୋକ ନିମିଷକରେ ଲିଖା କୁଡ଼ିଆ ପାଖରେ ଜମା ହୋଇଗଲେ । ଅବଶ୍ୟ ସମ୍ଭାବ୍ୟ ବିପଦ ପାଇଁ ଟାଙ୍ଗିଆ, ଫାର୍ସା ପ୍ରଭୃତି ସଙ୍ଗରେ ଆଣି । ଜନସଂଖ୍ୟା ବଢ଼ିବାକୁ ଲାଗିଲା । ଲିଖା କେବଳ, ସମସ୍ତଙ୍କୁ କହିଲା, ପକ୍ଷୀ ଦିହରେ ଟିପ ଦେଲେ ଗାଁଟା ସାରା ଲୋକଙ୍କୁ ବିପଦ ଆସିବ ।

ଏ ସମୟରେ ତିହାଡ଼ି ପଣ୍ଡିତେଙ୍କ ସ୍ତ୍ରୀ ହଠାତ୍ ପାଛିଏ ଗୁଡ଼ଇ ଓ ବରକୋଳି-ପତ୍ର ପକ୍ଷୀ ଆଡ଼କୁ ଫୋପାଡ଼ି ହୁଳହୁଳି ଦେଇ ମୁଣ୍ଡିଆ ମାରିଲେ । ଗାଁର ଅନ୍ୟ ସ୍ତ୍ରୀ ଲୋକମାନେ, ପଣ୍ଡିତିଆଣୀଙ୍କର ଆଦ୍ୟ ବନ୍ଦାପନାକୁ ଆହୁରି ବଢ଼ାଇ ଦେଲେ, ଧୂପ, ଦୀପ, ଅରୁଆ ଚାଉଳ ଘେନି ପକ୍ଷୀର ଚାରିଦିଗରେ ପରିକ୍ରମା କରିବା ସହ ହରିବୋଲ ଧ୍ୱନୀରେ ଗାଁଟି କମ୍ପି ଉଠିଲା ।

କେଉଁ ଦିନରୁ ଭାଙ୍ଗି ଯାଇଥିବା ଗାଁର ସଂକୀର୍ତ୍ତନ ମଣ୍ଡଳୀର ଅର୍ଫମୈଆ ପାଣ୍ଡିଆନନା, କେଉଁଠୁଁ ମୃଦଙ୍ଗଟେ ଆଣି ଏଭଳି ପିଟିଲା ଯେ କେଇଦିନ ଧାନ ଅମଳରେ ବ୍ୟସ୍ତ କୀର୍ତ୍ତନୀୟା ଟୋକା ଗିନି, କରତାଳି ଧରି ହରିନାମରେ ଜାଗାଟିକୁ ଆହୁରି ଜମାଇ ଦେଲେ ।

ଗାଁରୁ ଅନ୍ୟ ଗାଁକୁ ଏଭଳି ଏକ ଦିବ୍ୟ ବିହଙ୍ଗଗଜର ଅବତରଣ ଖବର ବିଜୁଳି ବେଗରେ ବ୍ୟାପିଗଲା । ଚାରିଦିଗରୁ ଜନସ୍ରୋତ ଛୁଟିଲା ଲିଖା ସାଉଁଗର କୁଡ଼ିଆ ପାଖକୁ । ନିକଟ ସହରର ପୃଥୁଳକାୟ ମାରୁଆଡ଼ି, ହଳେ ମର୍ସିଡାଇଜ୍ଡ୍ ଧୋତି ସହ କେଇଟି ଦଶଟଙ୍କିଆ ନୋଟ ଲିଖା ପାଦରେ ଥୋଇ ପ୍ରଣାମ କଲାବେଳକୁ ଲିଖାର କୁଡ଼ିଆ ଆଗରେ ପକ୍ଷୀ ଉଚ୍ଚର ଅରୁଆ ଗୁଡ଼ଇ ଆଉ ଟଙ୍କା ପଇସା ଗଦା ହୋଇଗଲା ।

ପକ୍ଷୀଟି, ଲିଖା ପାଖରେ ଛିଡ଼ା ହୋଇଥାଏ । କେବଳ ମଝିମଝିରେ ଅଣ୍ଡ ବଢ଼ାଇ ଗୁଞ୍ଜଙ୍କ ଗଦାରୁ ଗଜଧାରଣ କରି ପାକୁଳି ଦେଉଥାଏ । ଲିଖା କିନ୍ତୁ ଏସବୁ ଘଟଣାରେ ସଂପୂର୍ଣ୍ଣ ନିରବରେ ଅନାଇଥାଏ । ସେ ବୁଝିପାରୁ ନଥାଏ ଏ ସବୁ ସ୍ୱପ୍ନ ନା ସତ୍ୟ । ସେ ଛୋଟୀକୁ କାନ୍ଧରୁ ଓହ୍ଲାଇ ଖାଁବୁଥିଲା ନଈ ସ୍ରୁଅରେ ଭସିଯିବ । ଏବେ ଭାବୁଛି ସତରେ ସେ ଆତ୍ମହତ୍ୟା କରିସାରିଛି ଏବଂ ସିଧା ସ୍ୱର୍ଗପୁରୀକୁ ଚାଲି ଆସିଛି । ନାରାୟଣଙ୍କର ଏଇ ବାହାନ ଗରୁଡ଼କୁ ମୃତ୍ୟୁପରେ ହିଁ ଭେଟୁଛି । ମୃତ୍ୟୁପରର ଅନୁଭବମାନ ଏଭଳି ସ୍ୱାଭାବିକ ହୋଇ ଯାଇଥିବା ଯୋଗୁଁ ସେ ଭ୍ରମରେ ପଡୁଛି । ଲିଖା ପୁଣି ଦେଖେ ସେଇ ଗାଁ, ସେଇ ତା'ର କୁଡ଼ିଆ, ସେଇ ଡିହାଡ଼ି ପଣ୍ଡିତେ, ସେଇ ଗାଉଁଡିଆ ସବୁ କିଛି ପାର୍ଥିବ କେବଳ ଦିବ୍ୟପକ୍ଷୀ ବ୍ୟତିରେକେ ।

ଲିଖା ଏଥର ଚାଲିଲା, ଗାଁର ପୋଖରୀ ହୁଡ଼କୁ । ପକ୍ଷୀ ତାକୁ ଅନୁସରଣ କଲା । ଲିଖା ତା ଦିହରୁ ସିନ୍ଦୁର ଆଉ ବିଲ୍ୱପତ୍ର ପୋଛି ପାଣି ପାଖକୁ ଘେନିଗଲା ତାକୁ ଅନୁସରଣ କରୁଥିଲେ ଶହ ଶହ ନରନାରୀ । ହଠାତ୍ ପକ୍ଷୀଟି, ଥଣ୍ଟ ବଢାଇ ଦେଲା ମଝିପାଣିକୁ । ପରକ୍ଷଣରେ ଥଣ୍ଟ ଟେକିଲା ବେଳକୁ ଚଞ୍ଚୁରେ ତାର ଛଟପଟ ହେଉଥିଲା, କେଜିକିଆ ମିରିକାଲି ମାଛଟାଏ । ମାଛଟାକୁ ଥିରିକରି ଥୋଇ ଦେଲା ଲିଖା ପାଖରେ । ସ୍ତ୍ରୀଲୋକ ମାନେ, ପୁଣିଥରେ ହୁଳହୁଳିରେ ପୋଖରୀ ହୁଡା କଂପାଇ ଦେଲେ ।

ଏଥର ପକ୍ଷୀଟି ନିର୍ବିଘ୍ନରେ ପୋଖରୀ ସାର ପହଁରିଲା । ମାତ୍ର କେଇ ମିନିଟ୍‌ରେ ଗୋଟି ଗୋଟି ଗେହି, ମିରିକାଲୀ ଆଣି ଥୋଇ ଦେଲା ପୋଖରୀ ହୁଡ଼ାରେ ।

ଗାଁ କନ୍ଦଳ ଯୋଗୁଁ ଆଗରୁ ବନ୍ସୀଟେ ପକାଇବା ମଧ୍ୟ ଯେଉଁଠି ବିରାଟ ହଟଗୋଳର ସମ୍ଭାବନା ଥିଲା, ଏଇନେ ଏହି ପକ୍ଷୀ ମୀନ ଶିକାରରେ କେହି ମଧ୍ୟ ପ୍ରତିବାଦ କରିବା ଉଚିତ ମଣି ନ ଥିଲେ । ଲିଖା କିନ୍ତୁ ମାଛ କେଇଟି ପକ୍ଷୀପାଇଁ ଘୋଷାଡ଼ି, ଅନ୍ୟ ସବୁ ଗାଁ ବାଲାଙ୍କୁ ବାଣ୍ଟି ନେବା ପାଇଁ କହିଥିଲା ।

ଲିଖାର ଜୀବନଧାରା କିନ୍ତୁ ପକ୍ଷୀ ଆଗମନ ପରେ ସମ୍ପୂର୍ଣ୍ଣ ବଦଳି ଗଲା । ଲିଖା ଆଉ ଅସହାୟ ବା ସାମାନ୍ୟ ସଉଁରା ହୋଇ ରହିଲା ନାହିଁ । ସଙ୍ଗେ ସଙ୍ଗେ

ଦୁଇ ତିନୋଟି ପିଲ୍ଲ ଲିଖାର ଦେଖା ରଖା, ଗେଷ୍ଟହାଉସ, ପାଇଁ ଆଗେଇ ଆସିଥିଲେ । ଏଇ ସବୁ ସୁଖ ସୁବିଧା ସହ ତାହାର ସୁଖ୍ୟାତି ମଧ୍ୟ ଦେଶ ବିଦେଶର ପ୍ରତ୍ୟେକ ଖବର କାଗଜ ମାନଙ୍କରେ ବଡ଼ ବଡ଼ ଶିରୋନାମାରେ ପ୍ରକାଶ ପାଇଲା ।

ଲିଖାର ପକ୍ଷୀ ମହିମା ଏଭଳି ବିସ୍ତାର କରିଗଲା ଯେ ଦୂର ଦୂରାନ୍ତରରୁ ଅନେକ ସାଧୁ ସନ୍ଥ ମଧ୍ୟ ଅଲୌକିକ ପକ୍ଷୀ ଦର୍ଶନ ପାଇଁ ଆସିଲେ । ଆମ ଗାଁଟି ଆଉ "ଟେରେ ବାହାଲ୍" ନହୋଇ ଏକ ପୁଣ୍ୟମୟ ପକ୍ଷୀ ତୀର୍ଥରେ ପରିଣତ ହୋଇଗଲା । ଏଇ ହା ହୁଲ୍ଲା ମଧ୍ୟରେ ମୋର ବହିବସ୍ତାନି ବାନ୍ଧି ମୁଁ ଲିଖାର ବ୍ୟକ୍ତିଗତ ସଚିବ ପଦକୁ ଆବୋରି ନେଇଥାଏଁ । ପକ୍ଷୀ ଅବତରଣ ଲିଖାର ସମ୍ବେଦନ, ପକ୍ଷୀର ଗୁଣଗ୍ରାମ ଅନ୍ୟ ଭକ୍ତାଭକ୍ତଙ୍କୁ କହିବା ପାଇଁ ମୋର ବାଗ୍ମିତାକୁ ମଧ୍ୟ ନିର୍ବିବାଦରେ ଗ୍ରହଣ କରା ହୋଇଥାଏ ।

ସେଇ ଯୋଗକୁ ରାଜ୍ୟର ରାଜନୀତିରେ ବଡ଼ ହଟଚମଟ ସୃଷ୍ଟି ହୋଇଥାଏ । ସେଇ ମଧ୍ୟ ଗୋଟାଏ ପକ୍ଷୀ ପ୍ରସଙ୍ଗକୁ ନେଇ । କଥାଟି ହେଲା, ହୋ ହାଲ୍ଲାରୁ ମୁକ୍ତ ହୋଇ ରାଜ୍ୟରୁ ମୁଖ୍ୟମନ୍ତ୍ରୀ ରାଜଧାନୀ ସନ୍ନିକଟସ୍ଥ ଏକ ପକ୍ଷୀବିହାରକୁ ମଝିରେ ମଝିରେ ବିଶ୍ରାମ ପାଇଁ ଯାଆନ୍ତି ।

କୌଣସି ଜଣେ ଛିଆଣିଆ ସାମ୍ବାଦିକ, ସିଧା ନ୍ୟାୟାଳୟରେ ଗୋଟେ ଅଭିଯୋଗ କଲେ ଯେ ମୁଖ୍ୟମନ୍ତ୍ରୀ ନିଜେ, ପକ୍ଷୀ ବିହାରର ଦୁର୍ଲଭ ସାରସ ଶାବକ କେଇଟି ଆପଣା ସକାଳ ଜଳଖିଆରେ ରୋଷ୍ଟ ଭାବରେ ଉଦରସ୍ଥ କରି, ସରକାରୀ କ୍ଷମତାର ଅପବ୍ୟବହାର କରିଛନ୍ତି । ମୁଖ୍ୟମନ୍ତ୍ରୀ ମହାଶୟ ଏହାକୁ ନିହାତି ମନଗଢ଼ା ଏବଂ ଅଭିସନ୍ଧିମୂଳକ ବୋଲି ମୋଟେ ଗୁରୁତ୍ୱ ଦେଲେ ନାହିଁ । ନ୍ୟାୟାଳୟରେ ପକ୍ଷୀବିହାରର ସଂରକ୍ଷକଙ୍କ, ପାକ୍ଷିକ ପକ୍ଷୀଗଣନା ଦସ୍ତାବିଜ୍ ତଥା ପକ୍ଷୀବିହାରର ବଙ୍ଗଳାର ଖାନସମାର ସତ୍ୟପାଠ, ବୟାନ୍ ପେଶ୍ ହେବା ପରେ ବିଚାରପତି ମହାଶୟ, ରାୟ ଦେଲେ ଯେ, ମାନ୍ୟବର ମୁଖ୍ୟମନ୍ତ୍ରୀ ପ୍ରାତଃ କାଳରେ ବିହାର ସଂରକ୍ଷକଙ୍କ ସହ, ସାରସ ଶାବକର ରୋଷ୍ଟ କିଭଳି ସ୍ୱାଦିଷ୍ଟ ତାହା କହିବା ସତ୍ୟ ଏବଂ ତହିଁରେ ପ୍ରଭାବିତ ହୋଇ ଅନୁଚର ଖାନସମା ଚିକେନ୍

କୁକୁଡ଼ା ଶାବକ ବଦଳରେ ସାରସ ଶାବକ ଶେଷ୍ ମାନ୍ୟବରଙ୍କର ଚିନ୍ତାଲକ୍ଷଣ ପରିତୃପ୍ତି ପାଇଁ ପରଶିଥିବାର ଅନେକ ବିଶ୍ୱାସଯୋଗ୍ୟ ତଥ୍ୟ ରହିଛି । ଏହା ରାଜ୍ୟର ମୁଖ୍ୟ ଭାବରେ ମାନ୍ୟବରଙ୍କର ନିହାତି ଅନୁଚିତ କାମ ଥିଲା । ତେବେ ସାରସ ସାବକ ବିନାଶ ପାଇଁ ନିଜେ ମାନ୍ୟବର, ସ୍ପଷ୍ଟ ନିର୍ଦ୍ଦେଶ ଦେଇ ଥିବାର ପ୍ରମାଣ ଅଭାବରୁ ମାମଲା ଖାରଜ୍ ହେଲା ।

ଏହି ରାୟକୁ ପୁଞ୍ଜି କରି ଶାସକ ଦଳର ଅସନ୍ତୁଷ୍ଟ ଗୋଷ୍ଠୀ, ବିରୋଧୀ ଦଳ ସହ ସାମିଲ୍ ହେବା ଯୋଗୁଁ, ମୁଖ୍ୟମନ୍ତ୍ରୀ ଇସ୍ତଫା ପ୍ରଦାନ କରି ବିଧାନ ସଭା ଭାଙ୍ଗି ଦେବାପାଇଁ ପରାମର୍ଶ ଦେଲେ ଏବଂ ନିଜେ, ସମର୍ଥକ ମାନଙ୍କ ସହ ଏକ ପବନା ଦଳ ଗଠନ କରି ନିର୍ବାଚନରେ ବାହାରି ପଡ଼ିଲେ । ଏହି ଦଳକୁ ନିର୍ବାଚନ କମିଶନ "ପକ୍ଷୀ" ଚିହ୍ନ ପ୍ରଦାନ କରିବା ଯୋଗୁଁ ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଲିଖାର ପକ୍ଷୀକୁ ଆଗାମୀ ନିର୍ବାଚନ ସଂଗ୍ରାମର ଏକ ସମୃଦ୍ଧ ଅସ୍ତ୍ର ଭାବରେ ବ୍ୟବହାର କରିବା ମସୁଧା କରିଥିଲେ । ସେଇ ଭୂତପୂର୍ବଙ୍କର ଏକ ଚାଟୁକାରୀ କବି, ଯିଏକି ପଶୁପକ୍ଷୀଙ୍କ ବିଷୟରେ ଅନେକ କାବ୍ୟ କବିତା ରଚନା କରି ପ୍ରତିଷ୍ଠିତ, ଏହି ପକ୍ଷୀର ଅବ-ତରଣକୁ, ସତ୍ୟଯୁଗର ଆଗମନୀ ସଙ୍କେତ ଏବଂ କାଳାନ୍ତର ପାଇଁ ପ୍ରସ୍ତୁତ ଅତିମାନସର ଅବତରଣ ବୋଲି, ବର୍ଣ୍ଣନା କରି ଏକ ସୁଦୀର୍ଘ ସନ୍ଦର୍ଭ 'ଓଁକାର' ପତ୍ରିକାରେ ପ୍ରକାଶ କରିଥିଲେ । ମାନ୍ୟବର ମନ୍ତ୍ରୀ ମହାଶୟଙ୍କର ଗୋଟାଏ ଅନୁରୋଧ ମୋ ମାଧ୍ୟମରେ ଲିଖା ଆଗରେ ଉପସ୍ଥାପିତ ହୋଇଥିଲା ଯେ ପକ୍ଷୀଟି ଗୋଟାଏ ସୁସଜ୍ଜିତ ହାଲୁକା ରଥରେ ଆସୀନ ନେତାଙ୍କୁ ନିର୍ବାଚନ ମଞ୍ଚର ଚଉ-ପାଶରେ ଥରୁଟିଏ ବୁଲାଇ ନେବ, ପ୍ରତିବଦଳରେ ନେତା, ଲିଖାକୁ ରାଜ୍ୟସଭାକୁ ମନୋନୟନ କରିନେବେ ବା ଯା ଇଚ୍ଛା ଅର୍ଥ ପ୍ରଦାନ କରିବେ ।

ଅବଶ୍ୟ ମୋର ପ୍ରରୋଚନାରେ ଲିଖା ଏଭଳି ଏକ ବିବଦମାନ ବ୍ୟକ୍ତିର ପ୍ରତୀକ ଭାବରେ ପକ୍ଷୀଟିକୁ ଉଡ଼ାଦେବା ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବା ପରେ, ବିରୋଧୀ ଦଳ ତରଫରୁ ସ୍ୱତନ୍ତ୍ର ଭାବରେ ସମ୍ବର୍ଦ୍ଧିତ ହୋଇଥିଲା ।

ଏ ମଧ୍ୟରେ ଆନ୍ତର୍ଜାତୀୟ ଶାରିରୀକ ଅକ୍ଷମ ସଂଘ ତରଫରୁ ଲିଖା ପାଇଁ କୃତ୍ରିମ ପାପୁଲି ଆମେରୀକାରୁ ଭେଟି ସ୍ୱରୂପ ମିଳିଥିଲା । ଲିଖା ଏବେ ବେଶ୍ ଆରାମ୍ ଅନୁଭବ କରିବା ଆରମ୍ଭ କଲା ।

ଗାଁରେ ଅବଶ୍ୟ ଜନସମାଗମ ଭିଡ଼ ଯୋଗୁଁ ନଇକୂଳିଆ ବାହାଲ୍‌ରୁ ପଚାଶ ଏକର ଲିଖା କିଣି ସାରିଥିଲା ଏବଂ ସେଇଠି ପକ୍ଷୀତୀର୍ଥଟି ଏକ ନୂତନ ଶୈଳୀରେ ଗଢ଼ି ଉଠିଲା । ପ୍ରରିଆଡ଼େ ପ୍ରଚାର ହୋଇଗଲା ଯେ, ପକ୍ଷୀ ଆଶୀର୍ବାଦରେ, ଦୁରାରୋଗ୍ୟ ରୋଗ ଉପଶମ, ଅପୁତ୍ରିକର ପୁତ୍ରଲାଭ, ଭିକାରୀର ଲଟେରୀ ଲାଭ, ଟାଉଟରର ମନ୍ତ୍ରୀପଦ ସୁଲଭ ହୋଇ ଯାଇଛି । ହଜାର ହଜାର ଭକ୍ତ, ଅପୁତ୍ରିକ, ନିର୍ଜଳା ଉପବାସ ରହି, ନଇପଠାସାରା, ପକ୍ଷୀ କୃପାର ଭରସାରେ ଅଧିଆ ପଡ଼ିବା ଆରମ୍ଭ କରିଦେଲେ ।

ଲିଖାର କଙ୍କାଳିଆ, ଢାଙ୍ଗାଳିଆ ଶରୀରରେ ମେଦମାଂସ ବଢ଼ିବାକୁ ଲାଗିଲା ଏବଂ ଗାନ୍ଧି ବିଡ଼ି କେବେ କେମିତି ଟାଣୁଥିବା ଲିଖା ଏଥର ସାମାନ୍ୟ ମଦ୍ୟପାନକୁ ସ୍ୱାଭାବିକ ଭାବରେ ଗ୍ରହଣ କରି ନେଇଥିଲା ।

କିନ୍ତୁ କେଇ ଦିନପରେ, ଜଣେ ଆମେରିକୀୟ ସର୍କସ ପାର୍ଟିର ମାଲିକ ଏବଂ ତାଙ୍କର ସୁଶ୍ରୀ ଶ୍ୱେତାଙ୍ଗିନୀ ଷୋଡ଼ଶୀ କନ୍ୟା, ବିଚରା ଲିଖାର ଜୀବନରେ ଆଣିଦେଲେ ପରମ ସଙ୍କଟ ।

ସେମାନେ ମୋ ମାଧ୍ୟମରେ ଲିଖାକୁ ଦେଶ ବିଦେଶର ଖବର କହିଲେ । ଋଷିଆ ଜେନେଭା, କାନାଡ଼ା, କୋଟିଏ ଡ଼ଲାର୍‌ର କାହାଣୀ । କେବଳ ଗୋଟାଏ ସର୍ତ୍ତ, ଲିଖା ପକ୍ଷୀକୁ ତାଙ୍କ ସର୍କସରେ ସାମିଲ କରିବା ପାଇଁ ଚୁକ୍ତିବଦ୍ଧ ହେଲେ ହେଲା । ଲିଖାକୁ ଏହି ସମସ୍ତ ସମ୍ଭାବନାର ଏକ ସ୍ଥୁଳଚିତ୍ର ତା ଭାଷାରେ ଜଣାଇଲି ଯେମିତି ସେ କହିଲା "ହେ ଗଅଁଡ଼ିଆ ପିଲା, ମର୍‌କେନ୍ ଅଛେଯେ ଖାଏବା ?" ।

ମୁଁ ସାହେବଙ୍କୁ ଲିଖାର ମତାମତ ଅନୁବାଦ କଲି "ଆଇ.ଏମ୍.ଏ ଭଇଡୋର ଏଣ୍ଡ୍ ଇସ୍ପ୍ୟଲେସ ହୁ ଭଇଲ୍ ଇନ୍‌ହେରିଟ୍ ଦେଟ୍ ଆଇ ସେଲ୍ ଆରନ୍ ମୋର" ।

ସାହେବ କହିଲେ, ଲିଖାତ ମାତ୍ର ପଚିଶ ବର୍ଷର ଯୁବକ, ଯେତେବେଳେକି ଜୀବନର ଅସଲ ଆରମ୍ଭ ପାଶ୍ଚାତ୍ୟରେ । ସେ ନିଜେ ବିବାହ କଲେ ପଚାଶ ପରେ,

ଆଉ ଲିଖାର ଯେଉଁ ମାହାତ୍ମ୍ୟ ତାହିଁରେ ସହସ୍ର ଶ୍ୱେତାଙ୍ଗିନୀ ଲିଖାର ପ୍ରାଣପନ୍ତୀ ହେବା ପାଇଁ ଉଦ୍‌ବିଗ୍ନ । ମୁଁ ଲିଖାକୁ ଯଥାର୍ଥ ଅନୁବାଦ କରିଦେଲି । ଲିଖା କିନ୍ତୁ ଜାତି ପ୍ରଥାର ଗଣ୍ଡିରୁ ମୁକ୍ତ ହୋଇନଥିଲା, ମୋତେ କହିଲା, "ନେଇ ବୁଆ ! ସେମାନେ କେନ୍ ନେଇ କେନ୍ ଜାତିର ?"

କିନ୍ତୁ ସାହେବ ଥିଲା ଅତ୍ୟନ୍ତ ଚାଲାକ୍ । ସାହେବ ଗୋଟାଏ ଦାମିକା ସେମ୍ପାଇନ୍‌ରୁ କେଇ ଗ୍ଲାସ୍ ଲିଖାକୁ ଚଖାଇ ଦେଲାପରେ ସୁଶ୍ରୀ କନ୍ୟା ସୋଫିଆ ଅନାବୃତ୍ତ ଅବୟବରେ ଲିଖାକୁ ଜାବୁଡ଼ି ଧରି ଲିଖାର ଗଣ୍ଡ ଦେଶରେ ନେସିଦେଲା କେଇଟି ଚୁମ୍ବନ । ସେକ୍ଷଣିହିଁ ଲିଖାର ଶରୀର ଓ ମନରେ ଏକ ବିରାଟ ପରିବର୍ତ୍ତନ ସଂଘଟିତ ହେଉଥିବା ସୂଚନା ମିଳିଥିଲା । ବିଦେଶୀ ପାନୀୟ ଝୁଙ୍କରେ କନ୍ୟାକୁ ଆଲିଙ୍ଗନ କରି ଲିଖା କହିଲା "ଏ ଡେରେ ଆସ୍‌ଲା କାଏଁ ଯେ, ଏ ହାତ୍ ଆସ୍‌ଲା କାଏଁ ଯେ, ମୁଁଇ ଲିଖା ମର୍ କପାଲ୍ ରେଖା ନେଇ ଜାଣି, ଭଗବାନ୍‌ଙ୍କର ଇଛାକେ ମନା କରମି କାଏଁ ଯେ । ଭଗବାନ୍ ଚାହୁଁଛେ, ଲିଖାର ଗୁଟେ ବଂଶ ରହେବା—ମର ପିଲା ଝିଲା ହେବେ, ଇ ଟୁକେଲା ଭଳିଆ ଧୋବ ଇ ଡେରେ ଭଳିଆ, ଉଗ୍ଲ ଖୁବ୍ ଉଚା ।

ସାହେବଙ୍କୁ ଲିଖାର କଥା ଯେମିତି ଇଂରାଜୀରେ ଅନୁବାଦ କରିଦେଲି ସାହେବ ଆଉ ଗୋଟାଏ ବୋତଲ ସାମ୍ପେନ୍ ଖୋଲି, ଲିଖାକୁ ବଢ଼ାଇ ଦେଲେ ।

ଏକଥା ପ୍ରଚାର ହୋଇଗଲା ଯେ, ଲିଖା ଗାଁ ଛାଡ଼ି, ଉଡ଼ାଜାହାଜରେ ଆମେରିକା ଯିବ । ସାହେବ ଝିଅକୁ ବାହା ହେବ । ଚାରିଆଡ଼େ ଚହଳ ପଡ଼ିଗଲା । ଅନେକେ ତାକୁ ଏଇ ପଦକ୍ଷେପକୁ ନାପସନ୍ଦ କରି ବିବୃତ୍ତି ଦେଲେ, ଏବଂ ଟିହାଡ଼ି ପଣ୍ଡିତେ ଭଳି ଅନେକେ, ପ୍ରତ୍ୟକ୍ଷରେ ଲିଖାକୁ ନେହୁରା ହୋଇ ଗରୁଡ଼ ସର୍ପୀ ପକ୍ଷୀକୁ ଦେଶାନ୍ତରିତ ନ କରିବା ଏବଂ କିରିସ୍ତାନୀ ସାହେବ ଝିଅ ବଦଳରେ ଆପଣା ଜାତିର ଧାଙ୍ଗଡୀ ଝିଅଟେ ଗ୍ରହଣ କରିବା ସପକ୍ଷରେ ଅନେକ ତାର୍ତ୍ତିକ ଯୁକ୍ତି ବାଢ଼ିଲେ । ଲିଖା କିନ୍ତୁ ନିଜ ନିଷ୍ପତ୍ତିରେ ଅଟଳ ରହିଲା । ସ୍ଥିର, ହେଲା, ଯଥାଯଥ ସର୍ବ ସମୁଖରେ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ଚୁକ୍ତିନାମା ସ୍ୱାକ୍ଷରିତ ହେବ, ଏବଂ ଲିଖା ଆପଣା ପକ୍ଷୀସହ ହେଲିକେପ୍ଟର୍‌ରେ ଗ୍ରାମରୁ ଉଡ଼ିଯିବ ସିଧା ବୋମ୍ବାଇ ଓ ତାପରେ ଆମେରିକା ।

ନିର୍ଦ୍ଦିଷ୍ଟ ଦିନ ଅନେକ ଜନସମାଗମ ହୋଇଥିଲା ଗରୁଡତୀର୍ଥ ନଈ ବାଲିରେ । ସ୍ୱତନ୍ତ୍ର ମଞ୍ଚ ମଧ୍ୟ ନିର୍ମିତ ହୋଇଥିଲା । ସଭାମଞ୍ଚକୁ ମାଜିଷ୍ଟ୍ରେଟ୍ ମଧ୍ୟ ଆସିଥିଲେ ଲିଖାର ଚୁକ୍ତି ନାମାରେ ସ୍ୱାକ୍ଷର ସଂଗ୍ରହ ପାଇଁ । ସଭା ମଞ୍ଚଟି ସେଇ ଶିମୁଳୀ ଗଛ ମୂଳରେ ଅନୁଷ୍ଠିତ ହୋଇଥିଲା ।

ଅନ୍ୟଦିନ ଭଳି ସେଦିନ ମଧ୍ୟ ଲିଖା ପକ୍ଷୀକୁ ଭଲ ଭାବରେ ସଫା ସୁତୁରା କରି ପେଟେ ଗେହି, ଭକୁଡ, ମିରିକାଲୀ ଭେଗ ବାଡି, ଯୁହାର ହୋଇଥିଲା । ଏବେ ତାହାର ତତ୍ତ୍ୱାବଧାନରେ ସଂଗୃହିତ ଚେରମୁଳିର ସ୍ୱତନ୍ତ୍ର ମଲମକୁ, ଆଗ୍ରହରେ ଶୁଖିଆସୁଥିବା ପକ୍ଷୀରେ ନେସିଦେଇ ଲିଖା ପକ୍ଷୀ କଣ୍ଠରେ ଓହଲି ଗେଲ ହେଲା । ତା'ପରେ, ବିଦେଶୀ ପେଣ୍ଟ୍ ସୁଟ୍, ପିନ୍ଧି ଆମେରୀକିୟ ରମଣୀ, ସୋଫିଆର କାନ୍ଧରେ ହାତରଖି, ଅନ୍ୟ ଏକ ହାତରେ କଡାଇ ଆଣିଲା ପକ୍ଷୀକୁ ସଭାସ୍ଥଳକୁ । ଲିଖାର ପ୍ରାକୃତିକ ଅଙ୍ଗୁଳି ନଥିଲା, ବାଧ୍ୟ ହୋଇ ଲିଖା'ର ବାମଗୋଡ଼ର ବୃଦ୍ଧ ଅଙ୍ଗୁଳିର ଚିହ୍ନକୁ ଗାଁ'ର ତିନିଜଣ ମୁଖିଆ, "ଏଇ ଚିହ୍ନ, ଲିଖା ସାଉଁଗ ପିତା ସପୁ ସାଉଁଗର, ବାମ ଗୋଡର ବୃଦ୍ଧାଙ୍ଗୁଳି ଚିହ୍ନ" ବୋଲି ଲେଖି ସ୍ୱାକ୍ଷର କଲେ ଓକିଲଙ୍କ ପରାମର୍ଶରେ ।

ଲିଖା ଏହାପରେ ମୋର ଅନୁରୋଧରେ ଘୋଷଣା କଲା ଯେ, ତାହାର ଗରୁଡ଼ ତୀର୍ଥ ଏବଂ ସେଇ ସ୍ଥାନର ସଂପତ୍ତି ଗାଁ'ଲୋକ ଭୋଗ କରିବେ । ସଭା ମଣ୍ଡପ ସମୁଖରେ ଲିଖା ଦେଖୁଥିଲା ଦୂର କର୍ଲାପାଟ୍ ପାହାଡର ସେଇ ଶୃଙ୍ଗ ସମାରୋହ, ବିସ୍ତୃତ ଧାନକ୍ଷେତ, ପରିଚିତ ନଈକୂଳ । ତା'ପରେ ଯଥାରୀତି ମଞ୍ଚ ଉପରକୁ ପକ୍ଷୀକୁ ଡାକିଲା, ତାକୁ ସର୍କସ ମାଲିକ ଭବି–ଶଶୁରଙ୍କର କରକମଳକୁ ଔପଚାରିକ ଭାବରେ ବଢ଼ାଇ ଦେବାପାଇଁ । ସାହେବ ମଞ୍ଚର ଗୋଟାଏ ପାଖରେ ଥାଇ ଅତି ଆଗ୍ରହରେ ହାତ ବଢ଼ାଇଲେ ।

ଲିଖା ଏତିକିବେଳେ ଟିକେ ବିହ୍ୱଳ ହୋଇ ଅଶ୍ରୁଳ ମନେହେଲା । ପକ୍ଷୀକୁ ଆଗକୁ ଯିବାକୁ ନିର୍ଦ୍ଦେଶ ଦେବାକ୍ଷଣି ପକ୍ଷୀଟି ପଛକୁ ଥଣ୍ଟ ଫେରାଇ ଲିଖାର ମୁହଁରେ ଚଞ୍ଚୁକୁ ଆଉଁସି ନେଇଥିଲା । ଲିଖା ଆବେଗରେ ଲୁହ ପୋଛିବାବେଳେ ହଠାତ୍ ପକ୍ଷୀଟି ଧୀରେ ଧୀରେ ପକ୍ଷ ବିସ୍ତାର କରି, ଅର୍ଦ୍ଧ ଉଡ୍ଡୀୟମାନ ଅବସ୍ଥାରେ

ଗୋଟାଏ ଘୋଡ଼ର ନଖ ସାହାଯ୍ୟରେ ସାହେବଙ୍କର କୋଟକୁ ଓଟାରି, ଅକ୍ଳେଶରେ ସାଙ୍ଗସଙ୍ଗକୁ ଆକାଶକୁ ଉଡ଼ିଗଲା ।

ସହସ୍ର ଲୋକ ହାଁ ହାଁ କରୁଥାଆନ୍ତି, ସାହେବ ବିକଳରେ ବୋବାଳି ଛାଡୁଥାଏ, ସାହେବୀ ଝିଅ ଲିଖାର କାଖରୁ ଖସି ଏକ ବିକଳ ଚିତ୍କାରରେ ତଳେ ମୂର୍ଚ୍ଛିତା ହୋଇ ପଡ଼ିଯାଇଥାଏ । ପକ୍ଷୀଟି ବାଜ ପକ୍ଷୀ ମୂଷା ଝାମ୍ପିଲା ଭଳି, ସାହେବକୁ ଚକ୍ରାକାରରେ ଆକାଶରେ ଘୂରାଇ ଘୂରାଇ ଖିମିଛୀ ଗଛ ମଝିରେ ଫିଙ୍ଗିଦେଇ କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

ଲିଖା ସହ ମୁଁ ସଦାବେଳେ ଥାଏଁ ବିଚରା ଲିଖା ହଠାତ୍ ଏଭଳି ଏକ ଅଘଟଣରେ ନିର୍ବାକ୍ ହୋଇଯାଇଥାଏ । ଏକ ଅସମ୍ଭବ ଚିତ୍କାର କରି ଲିଖା ମୋ ଉପରେ ଢ଼ଳି ପଡ଼ିଲା । ଲୋକମାନେ ସାହେବ ଯେଉଁଠି ପଡ଼ିଥିଲା ସେଠିକି ଧାଇଁ ଥାଆନ୍ତି । ମୁଁ ଲିଖାକୁ ଟେକି ଧରିଲି ଏବଂ ଦଉଡ଼ି ଯାଇ ଗୋଟାଏ ଗ୍ଲାସ୍ ପାଣି ଆଣି, ଛାଟିବାରେ ଲାଗିଲି । କିନ୍ତୁ ଲିଖା ଆଉ ଆଖି ଖୋଲିଲା ନାହିଁ । ମୁଁ ଲିଖାର ମୁହଁକୁ ଘଡ଼ିଏ ଯାଏଁ ଗ୍ଚହିଁ ରହିଲି ।

ଏ ସମୟରେ ଆକାଶରେ ପୁନର୍ବାର ସେଇ ପକ୍ଷୀର ଆବିର୍ଭାବ ହେଲା ।

ପକ୍ଷୀର ଆଗମନକୁ ଏବେ କିନ୍ତୁ ସହଜ ଭାବରେ ଗ୍ରହଣ କରିବା ପାଇଁ ଲୋକ ପ୍ରସ୍ତୁତ ନଥିଲେ । ଆକାଶରେ ପକ୍ଷୀ ଚକର୍ କାଟିବାକ୍ଷଣି, ଯିଏ ଯାହାର ପ୍ରାଣ ଭୟରେ ପଳାୟନ କଲେ । ମୁଁ ଏକା ଲିଖାର ଶବ ପାଖରେ ରହିଲି ।

ହଠାତ୍ ପକ୍ଷୀଟି, ସାଇଁକିନା ଆସି ମୋ ହାତରୁ ଲିଖାକୁ ଝାଂପି ନେଇଗଲା, ଛୋଟ ପିଲା ହାତରୁ ଭଜା ମାଛଟେ ଭଳି । ବିକଳରେ ମୁଁ ତା'ର ପକ୍ଷ କେଇଟି ଓଟାରି ଧରିଲି । ଲିଖା ସହ ଘୋଷାଡ଼ି ହୋଇ ପକ୍ଷୀଟି, ଆକାଶକୁ ଗ୍ଲଲିଗଲା, ମୋ ହାତରେ ରହିଲା, ମାତ୍ର ଗୋଟାଏ ପକ୍ଷୀପର ।

ତାହାହିଁ ହେଉଛି, ସେଇ ପର, ଯାହାର ବିସ୍ତୃତ ବିବରଣୀ ହେଉଛି ସତ୍ୟ ଯୁଗର ପକ୍ଷୀପର ଏବଂ କଳିଯୁଗର କଥାକାର କାହାଣୀ ।



ପରିଚିତ ପୃଥ୍ୱୀଟି ବେଳେ ବେଳେ ନିହାତି ନିଷ୍ପ୍ରଭ ମନେହୁଏ । ବିଶେଷତଃ ଗ୍ରିକିରିଆ ଜୀବନରେ କିଛି ବର୍ଷ ପରେ ବିଶେଷ କିଛି ନୂଆ ଘଟଣା ଘଟେନାହିଁ । ଆଗାମୀ ଦିନସବୁ ଗତ ଦିନମାଙ୍କର ରୁଟିନ୍ ରିପିଟେସନ ଭଳି ମନେହୁଏ । ବଡ ବିକଳ ଲଗେ ମନ । ଛଟପଟ ହୁଏ କିଛି ଗୋଟାଏ ନୂଆ ଅନୁଭୂତି ପାଇଁ, ଛୁଟି ଦିନ ମାନଙ୍କରେ ସମୟ ମଧ୍ୟ ସେମିତି ଫାଙ୍କା ଫାଙ୍କା ଲାଗେ ।

ଶୁଣିଥିଲି ମହେନ୍ଦ୍ରଗିରି ଏକ ଚମତ୍କାର ସ୍ଥାନ । କେଇ ହଜାର ଫୁଟ ଗିରି ଶୃଙ୍ଗ ଉପରେ ପର୍ଶୁରାମଙ୍କ ମନ୍ଦିର ଏବଂ ସେଇଠି କୁଆଡ଼େ ବିରହ ଯକ୍ଷ ନିର୍ବାସନରେ କାଳଯାପନ କରିଥିଲେ । କାଳିଦାସଙ୍କ ମହାକାବ୍ୟ "ମେଘଦୂତ" ସେଇ ଅତ୍ୟୁଚ୍ଚ ଗିରି ଶୃଙ୍ଗର ଭୟାବହ ନିର୍ଜନତାରୁ ହିଁ ନିସୃତ । ମୁଁ କାଳିଦାସଙ୍କ କାବ୍ୟ ମଧ୍ୟରେ ରାମଗିରିର ନିର୍ଜନତାର ପ୍ରତିଫଳନ ମାପି ନାହିଁ ବା ଭୃଗୁ ପୁତ୍ରଙ୍କ ଅଲୌକିକ ଜୀବନ କାହାଣୀରେ ବିଶେଷ ଭାବେ ବିମୋହିତ ହୋଇନାହିଁ । ତେବେ ସରକାରୀ ଜିପ୍‌ରେ ମହେନ୍ଦ୍ରଗିରି ପାଖ ଦେଇ ଅନେକ ଥର ପାରଳାଖେମୁଣ୍ଡି ଯାଇଛି । ଆକାଶ ସ୍ପର୍ଶୀ ଗିରିମାଳା ମଧ୍ୟରେ ବର୍ଣ୍ଣାଳୀ ମେଘଙ୍କର ବିଚରଣ ମୋତେ ବାରମ୍ବାର ଆକର୍ଷଣ କରିଛି । ବେଗବାନ୍ ଜିପ୍ ମଧ୍ୟରୁ ସବୁଜ ଶୈଳ-ମାଳାର ବିପୁଳ ଐଶ୍ୱର୍ଯ୍ୟକୁ ଶେଷଯାଏଁ ଅନାଇ ରହିଛି ।

ଶୁଣିଛି କେବଳ ଶିବ ଚତୁର୍ଦ୍ଦଶୀ ଦିନ ମହେନ୍ଦ୍ରଗିରି ଶୃଙ୍ଗ ଆରୋହଣ ସମ୍ଭବ । ସେଇ ଦିନ ହଜାର ହଜାର ଯାତ୍ରୀ ରାମେଶ୍ୱର ଦର୍ଶନ ପାଇଁ ସମ୍ମିଳିତ ଯାତ୍ରା କରନ୍ତି । ଘନ ଜଙ୍ଗଲରେ ବନ୍ୟ ହିଂସ୍ର ଜନ୍ତୁଙ୍କ ପ୍ରାବଲ୍ୟ ଯୋଗୁଁ ଅନ୍ୟଦିନ ମାନଙ୍କରେ ସେଠିକି ଯିବା ସମ୍ଭବ ହୁଏ ନାହିଁ ।

ଏଥର ଶିବରାତ୍ରି ଆଗ ପଛ ଦୁଇଦିନ ଛୁଟି । ଥୋକର ଜୀବନକୁ ଏକ ନୂତନ ଅନୁଭବ ଚଖାଇବା ପାଇଁ ମୁଁ ମହେନ୍ଦ୍ର ଗିରି ଯାତ୍ରା ଯୋଜନାକଲି ରବିବାର ସକାଳେ । ତା' ଆରଦିନ ଯାତ୍ରା । ବ୍ରହ୍ମପୁର ବସ୍ ଷ୍ଟାଣ୍ଡରେ ବୁଝିଲି ସେଠିକି ବସ୍ ନାହିଁ । ଟାକ୍‌ସି ଷ୍ଟାଣ୍ଡରେ ବୁଝିଲି, ସେକ୍ଷଣି ଗୋଟାଏ ଟାକ୍‌ସିରେ ଜେଇ ଜଣ

ଯୁବକ ମହେନ୍ଦ୍ରଗିରି ଯିବେ । ତାଙ୍କସହ ଯୋଗାଯୋଗ ପରେ ଟାକ୍‌ସିରେ ବସିଲି । ସାଙ୍ଗରେ ମାତ୍ର ଦୁଇ ଶହ ଟଙ୍କା, ଆଟାଚିରେ କିଛି ଲୁଗା ଏବଂ ଜଣେ କବି ବନ୍ଧୁ ସଦ୍ୟ ଉପହାର ଦେଇଥିବା ସଲ୍‌ମାନ୍ ରସିଦ୍‌ଙ୍କର ପୁସ୍ତକ 'ମିଡ୍ ନାଇଟ୍ ଚିଲ୍‌ଡ୍ରେନ୍' ବା 'ମଧ୍ୟ ରାତ୍ରିର ସନ୍ତାନ' ।

ପଲସା ପାଖରେ ସହଯାତ୍ରୀ ମାନେ କିଛି ଫଳ ଏବଂ ଜଳଖିଆ ଖାଇଲେ, ମୁଁ ମଧ୍ୟ ଗୋଟାଏ ପକେଟ୍ କାଜୁ ଏବଂ ବିସ୍କୁଟ୍ କିଣିଲି । ସହଯାତ୍ରୀ ମାନଙ୍କ ସହ ମୋର ବିଶେଷ କିଛ ପରିଚୟ ହୋଇ ନଥାଏ । ସେମାନେ ସମସ୍ତେ ମୋ ଠାରୁ ବୟସରେ ସାନ ଏବଂ ବେଶ୍ ପଢ଼ାଶୁଣା କରିଥିବା ଭଳି ମନେ ହେଉଥାନ୍ତି । ତାଙ୍କର ପରିଚୟ ଜାଣିବା ପାଇଁ କଥା ପ୍ରସଙ୍ଗରେ ତାଙ୍କ ନାମ, ଗ୍ରାମ ପ୍ରଭୃତି ଜିଜ୍ଞାସା କଲି ପଲସା ପରେ ।

ଯେମିତି ତାଙ୍କ ପରିଚୟ ପଚାରିଛି ସହଯାତ୍ରୀ ଚାରିଜଣ ହଠାତ୍ କେମିତି ଅସ୍ୱାଭାବିକ ଭାବରେ ଚୁପ୍‌ଚାପ ହୋଇଗଲେ । ପରସ୍ପରକୁ ଚାହିଁଲେ ଯେମିତି ମୁଁ ଚୁପ୍ ରହିଲି । ତାଙ୍କ ମଧ୍ୟରୁ ଜଣେ ଓଲଟି ମତେ ଜିଜ୍ଞାସା କଲେ ମୋର ପରିଚୟ । ମୁଁ ଠିକେ ଠିକେ କହିଲି—"ଜନ୍ମ କଳାହାଣ୍ଡିରେ, ପଢା ରେଭେନ୍‌ସାରେ ଚାକିରୀ ସରକାରଙ୍କଠାରେ ।"

—' ଚାକିରୀ ? କିଭଳି ଚାକିରୀ ?"

ଏହା ଥିଲା ଚାରି ଜଣଙ୍କର ସମ୍ମିଳିତ ପ୍ରଶ୍ନ । ମୁଁ ଉତ୍ତର ଦେଲି-"ଓଡ଼ିଶା ସରକାରଙ୍କ ବିକ୍ରୀ କର ବିଭାଗର୍ ମୁଁ ଜଣେ ଅଫିସର ।

ତାପରେ କର ନିର୍ଦ୍ଧାରଣ ତଥା ତାହାର ଆଦାୟ ନେଇ କେତେ କଥା କହିଲି । ମୁଁ ପୁଣି ବୁଝାଇଲି ଯେ, ବସ୍ତୁତଃ ଟିକସ ପ୍ରଣାଳୀ ସଭ୍ୟ ସମାଜର ପ୍ରତୀକ । ସକ୍ଷମଠାରୁ ପାଉଣା ଆଣି ଅକ୍ଷମର ଆର୍ଥିକ ଅବସ୍ଥା ସୁଧାରିବାର ଦର୍ଶନ ତହିଁରେ ଅଛି ।

ମୋ କଥା ଶୁଣି ଚାରି ଜଣ ସହଯାତ୍ରୀ ଏମିତି ହସିଲେ ଯେ, ମୁଁ ବିସ୍ମିତ ହୋଇଗଲି, କାରଣ ସେଥିରେ ହସିବାର କିଛି ନଥିଲା । ତାଙ୍କ ମଧ୍ୟରୁ

ଜଣେ ମୋତେ ସହାସ୍ୟ ବିଦ୍ରୁପରେ ପ୍ରଶ୍ନ କଲେ—"ମାର୍କସ୍ ପଢିଛନ୍ତି ।"

ମୁଁ ଉତ୍ତର ଦେଲି—'କେବଳ ପଢିନାହିଁ ସେଇ ସଂକ୍ରାନ୍ତ ଯେ କୌଣସି ଜଟିଳ ପ୍ରଶ୍ନର ସନ୍ତୋଷ ଜନକ ଉତ୍ତର ଦେଇ ମୁଁ ଅର୍ଥନୀତି ଓ ରାଜନୀତିରେ ପ୍ରଥମ ଶ୍ରେଣୀ ମାର୍କ ପାଇଛି । ମାର୍କସଙ୍କୁ ନବୁଝି କିଏ ବା ଅଫିସର ହୋଇ ପାରିବ ?'

ମୋ ଉତ୍ତର ମଝିରେ ଜଣେ ବାଧା ଦେଇ କହିଲେ—"ବେଶ୍-ବେଶ୍ । ହେଲା, ଆମେ ଜାଣିଲୁ ମାର୍କସ୍ ପଢିଛ । କିନ୍ତୁ ମାର୍କସଙ୍କୁ ଆଉ ଚମ ବୁଝୁଁଆ ରାକିରୀଆ ସ୍ତରରୁ ଟାଣ ନାହିଁ ।"

ମୁଁ କିନ୍ତୁ ଛାଡ଼ିବାର ଲୋକ ନୁହେଁ । ଟିକିଏ ଚଢ଼ା ଗଳାରେ କହିଲି—"ତମେ ସବୁ ମାର୍କସ୍ କଣ ଜାଣ ? ସେ ମଧ୍ୟର ସର୍ପ୍ଲସ୍ ଭେଲ୍ୟୁ ଥିଓରି, ଡାଇଲେକ୍‌ଲିକଲ୍ ମେଟେରିଆଲିଜିମ୍ ଡ୍ରାଣ୍ଟେ-ନିଶ୍‌ଙ୍କେ-ଆଉ ସୁମ୍ପେଟର୍‌ଙ୍କ ଅର୍ଥନୈତିକ ମଡେଲ୍ ବିଷୟ ଅତି ଗଭୀର କଥା... ।"

ଆମର ଏଇ କଥାବାର୍ତ୍ତା ମଧ୍ୟରେ ଗାଡ଼ିଟି ମୁଖ୍ୟ ରାସ୍ତା ଛାଡ଼ି ଗୋଟାଏ ସଙ୍କୀର୍ଣ୍ଣ ଜଙ୍ଗଲ ରାସ୍ତାରେ ଆଗେଇଥାଏ । ଗୋଟିଏ ଜାଗାରେ ମୋର କଥା ମଝିରେ ଡ୍ରାଇଭର୍ ଗାଡ଼ିର ବ୍ରେକ୍ ଦେଲା, ଏବଂ କହିଲା, "କଣ ଏଇଠି ହବ ?"

ମୁଁ ଉତ୍ସାହ ସହ କହିଲି—"ରାମଗିରି କ'ଣ ଆସିଗଲା ? ଏଇଠୁ କ'ଣ ଚାଲିବାକୁ ହେବ ?"

ମୋର ପ୍ରଶ୍ନର ଉତ୍ତର ନଦେଇ ମୋର ସହଯାତ୍ରୀ ଯୁବକ ଜଣେ ମୋତେ ଆଦେଶ ଦେବା ଠାଣିରେ କହିଲେ—"ବାବୁ ବାହାରି ଆସିଲ, ଶୀଘ୍ର ବାହାର ।"

ମୁଁ ବାହାରି ଆସିଲି । ଡ୍ରାଇଭର ସହ ଅନ୍ୟ ଚାରିଜଣ. ଗୋଟାଏ ବିଶାଳ ଶାଳ ଗଛତଳେ ବିରାଟ ଶିଳା ଦେହରେ ବସି ମୋତେ ଲକ୍ଷ୍ୟ କରୁଥିଲେ । ମୁଁ ଚାରିଆଡ଼େ ଦେଖିଲି । ମହେନ୍ଦ୍ର ଗିରି ପର୍ବତମାଳା ଆଗରେ ଦୃଶ୍ୟମାନ । ଆନ୍ଧ୍ର ଏବଂ ଓଡ଼ିଶାକୁ ବିଭକ୍ତ କରୁଥିବା ସେହି ପର୍ବତମାଳା ମଧ୍ୟରେ ଏହା ଏକ ବଣ୍ୟ

ଉପତ୍ୟକା । ଆଖ ପାଖରେ କୌଣସି ଗାଁ ଗଣ୍ଡା ଦେଖା ଯାଉନଥାଏ । ବଣୁଆ ରସ୍ତାଟି ସେଇଠି ଶେଷ । ତେଣିକି ଘଞ୍ଚ ଜଙ୍ଗଲ ଓ ସୁଉଚ୍ଚ ପାହାଡ଼ । ବସନ୍ତର ପ୍ରଭବରେ ବଣର ଅଧିକାଂଶ ବୃକ୍ଷ ପତ୍ରହୀନ । ତଳେ ଶୁଖିଲା ପତ୍ରର ବହଳ । ମହୁଲ ଗଛମାନଙ୍କରେ ପଞ୍ଝା ପୁଞ୍ଝା ମହୁଲ ଗଜୁରୀଥାଏ ।

ହଠାତ୍ ମୋ ସାଙ୍ଗରେ ଥିବା ଯୁବକ ଆଦେଶ ଦେଲେ—"ପାଖରେ କେତେ ପଇସା ଅଛି କାଢ଼ିଲ—ଦେଖିବା !"

ମୁଁ ସମସ୍ତଙ୍କୁ ପୁଣି ଥରେ ଗୃହିଁଲି । ପଇସା ପକେଟ୍‌ରୁ କାଢ଼ିବା ବେଳେ ମୋର ଦେହଟା ଥରିବାକୁ ଲାଗିଲା ଏବଂ ମୁଁ ଅନୁଭବ କଲି ଯେମିତି ଏକ ଉଚ୍ଚ ପର୍ବତରୁ ଅସହାୟରେ ଖସି ପଡୁଛି । ତା'ପରେ ମୋର ସ୍ୱାଭାବିକତା ସମ୍ପୂର୍ଣ୍ଣ ଲୋପ ପାଇଗଲା । ମୁଁ ଯେ ବଦ୍‌ମାସ୍ ଡ଼କାୟତ ଦଳଙ୍କ ହାତରେ ଆପେ ଆପେ ଧରା ହୋଇଛି ସେ କଥା ଭାବିଲା ବେଳକୁ ଯେଉଁ ଯୁବକ ମୋ ହାତରୁ ପଇସା ନେଇଥିଲା କହିଲା—"ମାତ୍ର ଦୁଇଶହ ଟଙ୍କା !"

ଅନ୍ୟ ଜଣେ କହିଲା—"ନାଇଁ ବେ, ଶଳା ସାଙ୍ଗରେ କମ୍ ଆଣିଛି । ତା' ମୁଣ୍ଡ କୋଡିଏ ଟଙ୍କାର । ଚ୍ଚରିଦିନ ହେବ ମୁଁ ତାର ପିଛା କରିଛି । ବ୍ୟାଙ୍କ୍ କାଉଣ୍ଟରରେ ଶଳାର ପିଆଦା ଆସି ଟଙ୍କା ଜମା କରେ । ଗଲା ତିରିଶ୍ ତାରିଖରେ ଗୋଟିଏ ଦିନରେ ତାହାର ଜମା କୋଡ଼ିଏ ଲକ୍ଷ । ଶଳାର ପରିବାରକୁ ଲେଖ— ଅନ୍ତତଃ ପଚ୍ଚଶ ଲକ୍ଷ ଆଣିଲେ ଏଇଟାକୁ ଜୀଅନ୍ତା ଛାଡ଼ିବା । ଗଇଫଳ ଦାମ୍ ଏବେ ହଠାତ୍ ବଢ଼ିଯାଇଛି ।"

ମୋର ଆଉ କିଛି କହିବାର ନଥାଏ । ଦୂରରୁ ଆଉ କେଇ ଜଣ ଆସିବାର ଶବ୍ଦ ହେଲା । ଏମାନଙ୍କ ମଧ୍ୟରୁ ଜଣେ ଗୋଟାଏ ପ୍ରକାର ଅଦ୍‌ଭୁତ ହୁଇସିଲ୍ ଫୁଙ୍କିଲେ । ଅପର ପକ୍ଷରୁ ଠିକ୍ ସେଇଭଳି ଏକ ହୁଇସିଲ୍ ଆବାଜ୍ ଆସିଲା । ତା'-ପରେ ସମସ୍ତେ ବେଶ୍ ଆରାମ୍‌ରେ ବସି ତାଙ୍କୁ ଅପେକ୍ଷା କଲେ । ମୁଁ ମଧ୍ୟ ବାଧ୍ୟ ଆସାମୀଟେ ଭଳି ଆସନ୍ନ ବିପଦରୁ ମୁକ୍ତି ପାଇଁ ଭଗବାନଙ୍କୁ ସ୍ମରଣ କରୁଥାଏ ।

ଦଳର ମୁଖ୍ୟଭଳି ମନେ ହେଉଥିବା ଜଣେ ଶୀର୍ଣ୍ଣକାୟ ଯୁବକ ମୋତେ ତାଚ୍ଛଲ୍ୟ କରି କହିଲେ—"ବାବୁ ଆମକୁ ପାଠ ପଢ଼ାଉଥିଲ, ନାହିଁ ? ଶଳା,

ହିପୋକ୍ରାଟ୍, ବୁଦ୍ଧିଜୀବୀ ସାଜିଛି । ଆରେ ହାଗମୀ, ଜୀବନରେ ଭେକ କ'ଣ ଜାଣିଛୁ ? ଧନୀ ଘରର ପୁଅ, ଗେହ୍ଲାରେ ଦୋଳିରେ ଖେଳିଛୁ । ଟିକିଏ କାନ୍ଦିଲେ ବାପା, ମାଆ ସିରିଲେକ୍. ଭିଟାମିନ୍ ମିଶା କ୍ଷୀର, ମହୁ ଢାଳି ଦେଉଥିଲେ ତଣ୍ଟିରେ । ପାଠପଢା ପାଇଁ ହାତରେ ଯଥେଷ୍ଟ ପଇସା, ଖାଇବା ରହିବା ସୁବନ୍ଦୋବସ୍ତ । ରେଭେନ୍‌ସା ଆଉ କନିକା କୋଠାରେ ଆଉ ଗୋଟିଏ କଳା ରକ୍ତ ଶୋଷା ଓଡ଼ଶ ବଢି ଆସିଲ, ସଭ୍ୟତା ସଉକ ଆଉ ସାହିତ୍ୟ ତିଆରି ପାଇଁ । ବୁର୍ଜୁଆ ସରକାରଙ୍କ ବୁଗ୍‌ଗ୍ଲ ବୁହା ହାରମି, ଶଳା, ଆମକୁ ସମାଜବାଦ୍ ପଢାଉଛି । ବାକ୍ ଗ୍ଠୁରୀ ଦେଖାଉଛି । ଶଳାର ଆଖିକୁ ସହର ଚଳିର ସମାଜବାଦ ଦିଶୁନି । ଗୋଟାଏ ଧନୀ ବାପର ପୁଅ ହେଲାତ ଶଳାଙ୍କୁ ସାତ୍‌ଖୁନ୍ ମାଫ୍—ସବୁ କଲେଜ ଖୋଲ, ସବୁ ମାଷ୍ଟ୍ରେ ତାଙ୍କ ବାରଣ୍ଡାରେ, ସବୁ ପଦବୀ ଖାଲି । ସେଇ ହେଲେ ଅଫିସର୍ ଆଉ ମନ୍ତ୍ରୀ, ସେଇ ହେଲେ ଓକିଲ ଆଉ ଯନ୍ତ୍ରୀ । ସବୁ ମିଶି ପିନ୍ଧିଲେ ବୁଦ୍ଧିର ପୋଷାକ, ବନିଗଲେ ବୁର୍ଜୁଆ ସରକାରର ଗ୍ଚକର । ଆଉ ଯେତେ ରହିଲେ, କୁଢ କୁଢ ମଣିଷ ସେମାନେ ହେଲେ ଜୀଅନ୍ତା ମଢ, ପୋକମାଛି ତା' ଦେହରେ ଲଗିଲେ ଶୀତ ବର୍ଷା କାକର ଖରାରେ । ବୁଦ୍ଧିଜୀବୀ ଶୋଇଲେ ଶୀତତାପ ନିୟନ୍ତ୍ରିତ ଉଷ୍ମ କୋଠରୀରେ, ଚହାକୁ ତୁହା ମଦ ମାଇକିନିଆରେ ମଉଜ ଆଉ ଶଳାଙ୍କ ସାହିତ୍ୟ ମଦୁଆ ଖଟିର ଚନାଚୁର, ବେଦମ୍ ଗ୍ରେବାଇ ଗ୍ଲୁଛନ୍ତି ସଇତାନ୍‌ମାନେ ।"

ମୁଁ ନିର୍ବାକ୍ ହୋଇ ଶୁଣୁଥିଲି । ଅଶ୍ଳୀଳ ଉତ୍ତେଜିତ କଣ୍ଠରେ ବୁଦ୍ଧିଜୀବୀଙ୍କର ପ୍ରବଞ୍ଚନା ପୁର୍ଣ୍ଣ ଜୀବନ ଧାରଣର ବିଶ୍ଳେଷଣ । କାଣିଗ୍ଏ ଅଯୌକ୍ତିକତା ସେଥିରେ ନଥାଏ । କଥା ଗୁଡ଼ିକ ନିଆଁ ହୁଙ୍କାପରି ଖସୁଥାଏ ଏକ ତୀର୍ଯ୍ୟକରେ, ପ୍ରତିଟି ଶବ୍ଦରେ ଭରପୁର୍ ଘୃଣା ଓ କ୍ରୋଧର ଅଗ୍ନି । ମୁଁ ମାତ୍ର ଏତିକି କହିଲି— "ଭାଇମାନେ ! ମୁଁ ମୋଟେ ଧନୀ ଲୋକ ନୁହେଁ । ମୋର ବ୍ୟାଙ୍କ୍‌ରେ ମାତ୍ର ଦୁଇ ହଜାର ଟଙ୍କା । ଯାହା ଦରମା ପାଏଁ ପୁଅ ଝିଅଙ୍କ ଖାଇବା ଆଉ ଆପଣା ସଉକରେ ସାରିଦିଏ । ଘଟକୁ ଚିଠି ଦେଲେ, ମୋ ସ୍ତ୍ରୀ ଗହଣାଗାର୍ଣ୍ଣି ବନ୍ଧାକରି, ବା ବିକି କିଛି ପଠାଇପାରେ । ଗାଁରେ ବାପାଙ୍କର ଆଉ ପାଞ୍ଚଟି ପୁଅ—ଜମି ବିକ୍ରିକରି ପଇସା ଦେବା ଅପେକ୍ଷା ମୋର ମୃତ୍ୟୁ ଖବର ଶୁଣିଲେ ଟିକିଏ କାନ୍ଦ ବୋବାଳି କରି କର୍ତ୍ତବ୍ୟ ସମ୍ପାଦନ କରିବେ । ଆଉ ଯେଉଁ ବ୍ୟାଙ୍କ୍ ଜମା କଥା

କହୁଚ ସେ ସବୁ ଟଙ୍କା ସରକାରଙ୍କ ତହବିଲ୍‌ର ଜମା, ଡ୍ରାଫ୍‌ଟ ସବୁ ମୋ ଅଫିସ୍‌ରେ ଜମାହୁଏ, ତାହାକୁ ବ୍ୟାଙ୍କ୍‌କୁ ନେବା ମୋର କାମ । ମୋତେ ହଜାର ଥର ହାଣିଲେ ମଧ୍ୟ ତହିଁରୁ ଗୋଟାଏ ଟଙ୍କା ଆପଣମାନେ ପାଇବାର ସମ୍ଭାବନା ନାହିଁ । ମୋ ମଲାପରେ ଆଉ ଜଣେ ଆସି ସେଇ କାମ କରିବ । ମୁଁ ଗୋଟାଏ ଖଟିଖିଆ ଚାକର, ମୁଁ ମୋଟେ ଧନୀକ ବା ବୁର୍ଜୁଆ ନୁହେଁ । ମୁଁ ବି ସାମ୍ୟବାଦ୍ ଚାହେଁ କିନ୍ତୁ ଆପଣମାନଙ୍କ ଭଳି ମୋର ସତ୍‌ସାହସ ନାହିଁ ଯୁଝିବା ପାଇଁ । ସହଜିଆ ବୁଦ୍ଧି-ବଳରେ ଚାକିରୀ ପାଇ କୁଟୁମ୍ବ ପୋଷୁଛି । ମୋତେ କ୍ଷମା କରିଦିଅ, ମୁଁ ଏଆଡୁ ସେଆଡୁ କହିଦେଲି, ମୁଁ ଜାଣି ନଥିଲି ଆପଣମାନେ..........."

ମୋର ପାଟି ଅଟକି ଗଲା । ଜଣେ କହିଲା—"ଜାଣି ନଥିଲୁ ଆମେ ଡକାୟତ୍ ଚୋର ! ଆବେ ହିପୋକ୍ରାଟ୍ ! ଆମେ କେହି ଡକାୟତ ନୋହୁଁ । ତୋଠୁ ଅନେକ ବେଶୀ ପାଠ ପଢିଛୁ । ତୋଠୁ ଆହୁରି ବଡ ଚାକିରୀମାନଙ୍କୁ ନାତମାରି ଆମେ ଏଠି । ତୁ ବଦମାସ୍ ଗୋଟାଏ ଚୋର, ସରକାରୀ ଚୋର, ଲୋକଙ୍କର ଚାଉଳ, ଗହମ କାଠ ବାଉଁଶରେ କର ଲଗାଇ ଶଳା ବୁର୍ଜୁଆ ସମାଜ ପାଇଁ ଉଡ଼ାଜାହାଜ, ରେଳଗାଡ଼ି, ଲିପ୍‌ଷ୍ଟିକ୍ କାରଖାନା, ସରକାରୀ ଋଣ ବେଙ୍କ୍ ଦ୍ୱାର ଖୋଲି ଦେଉଛୁ—ଖାଉଟି ପେଟରୁ ପର୍‌ସେଣ୍ଟେଜ କାଟି ।"

ତେବେ ମୋର ଗୁହାରି ଶୁଣିବା ପରେ ଦଳର ଅସଲ ମୁଖ୍ୟ ଯିଏକି ଏଯାଏଁ ଗମ୍ଭୀର ଥିଲେ । ମୋତେ ଗାଳି ଦେଉଥିବା ଯୁବକକୁ ଲକ୍ଷ୍ୟ କରି କହିଲେ—"କମ୍ରେଡ୍ ! ତୁ ଗୁଟାଏ ବୁଦ୍ଧୁ । ଟଙ୍କା ଜମା କରୁଛି ତ ଧରି ଆଣିଲୁ ! ସରକାରୀ କି ବେସରକାରୀ ବୁଝିଲୁ କହିଁ । ସରକାରୀ ଟଙ୍କା ବେଙ୍କ ଲୁଟ୍ କଲେ ମନ୍ତ୍ରୀ ହେଲେ ହାତକୁ ବା ଆସେ । ଏମିତି ମାଧିଆ ହଜାରେ ହାଣିଲେ କିଛି ଛଉ ନାହିଁ । ବରଂ ଭିତରେ ଭିତରେ ଆମେ ଯେଉଁ ବୁରେକ୍ରେସିର ସିମ୍ପାଥି ପାଉଛୁ ସେ ବି ଯିବ । ଏଇଟା ମୋଟେ କୁମୁଟି ମହାଜନ ନୁହେଁ, ତାହାର କାହାପିଆ କଥାରୁ ମୁଁ ଶୁଂଘି ପାରୁଛି । ଆମ କାମ ପାଇଁ ଏ ନୁହେଁ । ଏଣିକି ତାକୁ ମାରିଦିଅ କି ଛାଡ଼ିଦିଅ—ଅନ୍ୟକଥା ବୁଝବା । ବିହାର ଖବର କଣ ଆସିଛି ? ଗଇଫଲ୍ ଆସିଛି କେତେ ? ଅପରେସନ୍ ମେଚ ବକ୍‌ସ କେମତି ଆଗେଇଛି ?"

ମୁଁ ଯୋଡ଼ ହସ୍ତରେ କରୁଣ ହୋଇ ଦଳପତିଙ୍କୁ ଅନାଇ ରହିଲି କୃତଜ୍ଞତାରେ । ମୋ ଦିଗକୁ ଦୃଷ୍ଟି ନଦେଇ ନବାଗତ ଯୁବକ ମଧ୍ୟରୁ ଜଣେ କହିଲା -"ଅପରେସନ୍ ମେଚ ବକ୍ସ ସଫଳ ହୋଇଛି । କେବଳ ବିଳାସୀ ସାମିଆନାରେ ନିଆଁ ଲଗିଛି-ବୋଇଂ ବିମାନଟି ଖସି ଧ୍ୱଂସ ପାଇଛି ।"

ଦଳପତି ଖବର ଶୁଣି ଆନନ୍ଦିତ ହେଲେ । କହିଲେ-"ଶଳା, ବୁର୍ଜୁଆ ବଦମାସ ! ସାମିଆନାର ସିଂହାସନରେ ସର୍କସ ଦେଖୁଛି । ନିର୍ବୋଧ ନିରୀହ ଶ୍ରମୀ ମୂଲିଆଙ୍କୁ ଖରାରେ ବସାଇ ଭାଷଣ ଦେଉଛି ! ଆଗାମୀ ଦିନର ନକ୍ସା ଟାଣୁଛି । କମ୍ରେଡ୍, ଏଇ ସଂଗ୍ରାମର ଅନ୍ତ ନାହିଁ-ସାମିଆନା ଯେତେ ସଉକିନ ମଖମଲି ହେବ ଦିଆସିଲିର ବାରୁଦ ସେତିକି ଜଲ୍‌ଦି କାମ କରିବ । ମେଚ ବକ୍ସ ଏକ ନିରୀହ ଜପସ୍ତର ଆମର ସିଏ ଅସଲି ଆଇ.ସି.ବି.ଏମ୍ । ବୁର୍ଜୁଆ ବୁଦ୍ଧିଜୀବୀଙ୍କର ତଥା ପୁଞ୍ଜିବାଦୀଙ୍କର ସିଲ୍‌କ ସାମିଆନା ପ୍ରତି ଯେତିକି ଆଗ୍ରହ, ତହିଁରୁ ବେଶୀ ଆଗ୍ରହ ଫୋମ ଜାତୀୟ ସିଂହାସନ ଯେଉଁଠୁ ଫୋପାଡ଼ି ଦିଅନ୍ତି ଭାଷଣ । କମ୍ରେଡ୍ ଗୋଟାଏ ମେଚ ବକ୍ସରେ ଯେତିକିଟି କାଠି ସେତିକି ପୁଞ୍ଜିବାଦୀର ଜଳିଯିବାର ଜଣଙ୍କର ଦାୟିତ୍ୱ ।

ତାପରେ ମୋତେ ଲକ୍ଷ୍ୟ କରି କହିଲେ-"ତମେ ବଞ୍ଚିଲେ କ'ଣ ବା କରିବ ? ବରଂ ମୃତ୍ୟୁ ହିଁ ଭଲ । ଆମ ହାତରେ ମଲେ ପୂର୍ଣ୍ଣ ଦରମା ସହ ପରିବାର ପେନସନ୍ ତଥା ଜି. ଆଇ. ସି. ମିଳିବ । ତହିଠୁ ବେଶୀ, ବୁର୍ଜୁଆ ସମାଜରେ ସହୀଦ ହେବାର ଗୋଟାଏ ଗୌରବ ମଧ୍ୟ ମିଳିଯିବ ।"

ମୋର ଜୀବନକୁ ଏଇ ଦୃଷ୍ଟିରୁ ମୁଁ କେବେଁ ତଉଲି ନଥିଲି । ଆସନ୍ନ ମୃତ୍ୟୁ ଆଶଙ୍କାରେ ଭିଜିଲା ଆଖିରେ ପୁଅ ଝିଅଙ୍କର ବିକଳ ନିରୀହ ଅନାଥ ମୁହଁଟିମାନ ବାରମ୍ବାର ଦୃଶ୍ୟମାନ ହେଉଥାଏ । କିଛି ସମୟ ପାଇଁ ସେମାନେ ଟିକିଏ ଦୂରକୁ ଯାଇ ଆପଣା ଆପଣା ମଧ୍ୟରେ ପରାମର୍ଶ କଲେ । ପରେ ଦଳପତି ମୋ ପାଖକୁ ଆସି ଗୋଟାଏ ରିଭଲ୍‌ଭର୍ ଦେଖାଇ ତାଙ୍କୁ ଅନୁସରଣ କରିବାକୁ କହିଲେ । ମୁଁ ତାଙ୍କୁ ଅନୁସରଣ କରି ଜଙ୍ଗଲ ଆଡକୁ ଗଲିଲି ।

ଘଣ୍ଟାଏ ପର୍ଯ୍ୟନ୍ତ ନିରବରେ ଜଙ୍ଗଲ ଅତିକ୍ରମପରେ ଦଲପତି ମୋତେ କହିଲେ-"ବୁଝିଲ ବାବୁ, ତମର ନିର୍ବୁଦ୍ଧିଆ ପଣ ଯୋଗୁଁ ମୁଁ ତମକୁ ଛାଡ଼ି

ଦେଇପାରେ । ହାଣ ଖାଇବା ପାଇଁ ଯେତିକି ବୁଦ୍ଧି ବିଦ୍ୟା ଓ ଖାତିର ଦରକାର ସେତିକି ତମ ପାଖରେ ନାହିଁ । ତେଣୁ, ମୁଁ ଦୁଃଖିତ—ତମକୁ ଛାଡ଼ି ଦେବାକୁ ହେବ ।”

ମୁଁ କୃତଜ୍ଞତାରେ ତାଙ୍କ ଗୋଡ଼ ତଳେ ପଡ଼ି କହିଲି—“ହେ ମହାଶୟ, ଏଇ ପ୍ରତିଭମାନେ ସାଧାରଣ ଗଣନୀତିରେ ଭଗନେଇ, ଦେଶ ଶାସନ ଭର ନେଇ ପାରନ୍ତେ । ସାମ୍ବିଧାନିକ ଉପାୟରେ ବିପ୍ଳବ କ'ଣ ଅସମ୍ଭବ ?”

ଦଳପତି ନିର୍ଲିପ୍ତ ଭବରେ କହିଲେ—“ବାବୁ, ବିପ୍ଳବ ସମ୍ବିଧାନ ଆଣେ । ସମ୍ବିଧାନ କେଭେଁ ବିପ୍ଳବ ଆଣେ ନାହିଁ । ଆଜିର ମନ୍ତ୍ରୀ, ଏମ୍.ଏଲ୍.ଏ ଏମ୍.ପି ବଜାରୀ ଛଟଗ ହତାଶିଆ, ଗୁଣ୍ଡା ଆଉ ମେଫିଆ ସର୍ଦ୍ଦାର୍ । ଅସାମାଜିକ ଜୀବ-ମାନେ ଆଜି ଦେଶକୁ ଶାସନ କରୁଛନ୍ତି । ସମାଜ ସେବାର ମୁଖାଟିମାନ ପିନ୍ଧି କ୍ରିମିନାଲ୍‌ମାନେ ଆଜି ବିଧାନସଭା ଆଉ ପାର୍ଲାମେଣ୍ଟ୍‌ରେ । ଜନ ପ୍ରତିନିଧିତ୍ୱ ନାମରେ ପ୍ରତାରଣା ପରମ ପରାକାଷ୍ଠାର ପ୍ରମାଣ ଏହି ପାଷାଣ୍ଡମାନେ । ଯେଉଁଠି ଭୟାର୍ତ୍ତ ଜନତା ଯ୍ଚେର ଡକାୟତ ଲଫଙ୍ଗା ମଧ୍ୟରୁ ଜଣକୁ ବାଛିବାକୁ ବାଧ୍ୟ, ସେଇଠି ଦୋଷ ହେଉଛି ସେଇ ପ୍ରକ୍ରିୟାର । ସେଇ ପ୍ରକ୍ରିୟାରେ ଜଣେ ବିବେକୀ ସତ୍ ପୁରୁଷର ସ୍ଥାନ ନାହିଁ । ସେଇ ପ୍ରତିନିଧିମାନେ, ଯେଉଁ ସଭ୍ୟତା ଏବଂ ସମାଜର ସ୍ୱପ୍ନ ଦେଖନ୍ତି, ସେଇଠି ଟି.ଭି, ସ୍ନୋ, ପାଉଡର୍, ରଙ୍ଗ ମହଲର ବିସ୍ତାର ହିଁ ସମୃଦ୍ଧି ନାମରେ ଅଭିହିତ ହୁଏ । ବିଳାସୀ ସମାଜର ରକ୍ଷା କବଚ ହୁଏ ତାହାର ଆଇନ୍ । ଯେଉଁ ଆଇନ୍‌ରେ ବଣିକ ସମ୍ରାଟ୍, ସେଇ ହିଂସ୍ରପଶୁଙ୍କର ସମୃଦ୍ଧି ପାଇଁ ଆମ ଭଳି ବିବେକୀ ବିପ୍ଳବୀ ବିଶ୍ୱାସ କରି ପାରେନା ।”

ମୁଁ ମଝିରେ କହିଲି, “କିନ୍ତୁ ଏବେ ଅନେକ ଦାରିଦ୍ର୍ୟ ନିବାରଣ ଯୋଜନା କାର୍ଯ୍ୟକାରୀ ହେଉଛି, ଅନେକ ଘୋଷଣା ହୋଇଛି ।”

ଦଳପତି ମୋତେ ବିରକ୍ତ ହୋଇ କହିଲେ, “ଭିକାରୀକୁ ଭିକ ଦେବା ମଡାକୁ ମଶାଣୀକୁ ନେବାଭଳି ଦରିଦ୍ରକୁ ଘରଡ଼ିହ ଦେବା, ଖାଇବାକୁ ଦେବା ସମାନ କଥା । ବୁଢ଼ୀଆ ମହାଜନ ବେମାର ପଡ଼ିଲେ ଅନ୍ନଛତ୍ର ଦେଇ ପୁଣ୍ୟ ଅର୍ଜନ କରିଥାଏ । ତମ ଶାସକଙ୍କ ସେଭଳି ଦାରିଦ୍ର୍ୟ ନିବାରଣ ଯୋଜନା ଗୋଟାଏ

ସଉକିଆ ବିଳାସ । ତାଙ୍କର ପୁତ୍ର ପୁତ୍ରାଦି ପାଇଁ ପୁଣ୍ୟ ଓ ପୁଞ୍ଜି । ଗୋଟାଏ ରେଖା ଟାଣି ତାକୁ ତଳ ଉପର କରି କହୁଛି ଲକ୍ଷେ ପରିବାର ଉପରକୁ ଆସିଲେ । ଦାରିଦ୍ର୍ୟ ସମ୍ପ୍ରସାରଣ ହିଁ ଏଇ ସଂସାର ସମୃଦ୍ଧିର ହେତୁ । ଶାସନର ବୁକ୍ସ୍ ବୁଦ୍ଧା ଏକ୍‌ଜିକ୍ୟୁଟିଭ୍‌ମାନେ, ତା' ପାଇଁ ନକ୍‌ସା ଟାଣୁଛନ୍ତି । ବ୍ୟୁରୋକ୍ରେସିର ବ୍ୟୁହଟି ଆପଣା ସଂରକ୍ଷଣ ପାଇଁ ହିଁ ସକ୍ଷମ । ତହିଁରେ ଆତ୍ମ ସଂରକ୍ଷଣ ବ୍ୟତୀତ ଅନ୍ୟ କିଛି ପ୍ରତିବଦ୍ଧତା ନଥାଏ । ଦରିଦ୍ର ପ୍ରତି ଦରଦ ତମମାନଙ୍କର ପୁଟଦିଆ ଆବରଣ । ବ୍ୟୁରୋକ୍ରେଟ୍‌ଗୁଡ଼ା ସୁବ୍ ସମ୍ରାଟ୍, ସାଙ୍କୁଭର୍ଲି ବୁର୍ଜୁଆକୁ ହିଁ ତୋଷାକରେ ।

ମୁଁ ପୁଣି କହିଲି ସାହସ କରି–'ବୁରୋକ୍ରେସିରେ ସମସ୍ତେ କଣ ହିପୋକ୍ରେଟ୍ ?'

ସେ କହିଲେ–"ଯେଉଁ ବ୍ୟବସ୍ଥାରେ ବ୍ୟକ୍ତିର କିଛି ବାହାଦୁରୀ ନାହିଁ, ବୁଦ୍ଧିଜୀବୀଙ୍କର ଅହଂକାରକୁ ସ୍ୱାଭିମାନ କହିବା ଗୋଟାଏ ମିଥ୍ୟା । ପଦବୀ ସବୁ ଆଜି ବଜାରରେ ନିଲମ ହେଉଥିବା ବସ୍ତୁ । ଟେଣ୍ଡର ଧରିବା ପାଇଁ ଦରକାର ବିଶ୍ୱବିଦ୍ୟାଳୟର ଦାମିକା ଡ଼ିଗ୍ରୀ, ତହିଁରୁ ଯିଏ ପାଇଲା, ତାହାର ଆପେ ଆପେ ଆସିଯାଉଛି ଗଜକୀୟ ଅଭିମାନ 'ଧେତ୍' !

ମୁଁ ପୁଣି କହିଲି "ମହାଶୟ, ଏହା ସତ୍ୟ ଯେ, ଶ୍ରୀଯୁକ୍ତ ପ୍ରେମରଞ୍ଜନ ଦୁବେ ଭଳି, ବିଦ୍ୱାନ୍ ବିଚକ୍ଷଣ ଯୁବକ, ଆଜିର ବ୍ୟୁରୋକ୍ରେସିରେ ସାମାଜିକ ପ୍ରଗତି ଏବଂ ସମୃଦ୍ଧି ପାଇଁ ପ୍ରତିବଦ୍ଧ । ଟେକ୍ନୋକ୍ରେଜି ମିସନ୍‌ର ମୁଖ୍ୟ, ସ୍ୱଗେଟି ବିଶାଳ ସରକାରୀ ଉଦ୍ୟୋଗର ଅପ୍ରତିଦ୍ୱନ୍ଦୀ ନାୟକ ଶ୍ରୀଯୁକ୍ତ ପ୍ରେମରଞ୍ଜନ କ'ଣ ଜଣେ ବିପ୍ଳବୀ ନୁହନ୍ତି ?"

ଦଳପତି ହଠାତ୍ ମୋତେ କ୍ରୋଧରେ ଅନାଇ ରିଭଲ୍‌ଭର ମୋର ମଥାରେ ଲଗାଇ ଦେଲେ । ସେ ଚିତ୍କାର କରି କହିଲେ, 'ତମେ ପ୍ରେମରଞ୍ଜନକୁ କେମିତି ଜାଣିଛ ?'

ମୁଁ ହତବାକ୍ ହୋଇଗଲି । ଦଳପତି ଏଥର ପୁଣି କ୍ରୋଧ ସମ୍ବରଣ କରି କହିଲେ–ଯୁବକ ! ତୁମକୁ ମୁଁ ଆଜି ଶେଷଥର ପାଇଁ କ୍ଷମା କରି ଦେଉଛି । କିନ୍ତୁ

ତମର ଗୋଟାଏ ବିଗଟ ଭ୍ରମଧାରଣା ଦୂର କରିଦେଉଛି । ମୁଁ ଆଜି ଯେଉଁ ଗୁପ୍ତ କଥାଟି ତମକୁ କହୁଛି, ତାହାକୁ ଆଉ କେଉଁଠି ପ୍ରକାଶ କଲେ ତମେ ଭଲେତର ଯେଉଁଠି ଥାଅନା କାହିଁକି ସପଭିବାର ଆମ କମ୍ପେତଙ୍କ ଗ୍ରେନେଡ୍ ମାଡ଼ରୁ ବର୍ତ୍ତି ପାରିବ ନାହିଁ । ଏହି ଗୁପ୍ତ ସତ୍ୟ ସହ ତମକୁ ବଞ୍ଚିବାକୁ ହେବ, ବୁଝିଲ ।'

ମୁଁ ନତମସ୍ତକ ହୋଇ ରହିଲି ଏବଂ ଦଳପତି ପୁଣି ଆରମ୍ଭ କଲେ–"ତମେ ଯାହାକୁ ପ୍ରେମରଞ୍ଜନ ବୋଲି ଜାଣିଛ ସିଏ ପ୍ରକୃତରେ ବିଶ୍ୱରଞ୍ଜନ ମୋର ବାଲ୍ୟ-ବନ୍ଧୁ । ଆଉ ବିଶ୍ୱ ବିଦ୍ୟାଳୟର ଅସଲ ଡ଼ିଗ୍ରୀ, ମେନେଜମେଣ୍ଟ ସ୍ପେସାଲିଷ୍ଟ ହେଉଛି ମୁଁ ନିଜେ ପ୍ରେମରଞ୍ଜନ ଦୂବେ, ପିତା ସ୍ୱର୍ଗୀୟ ଦିବ୍ୟଞ୍ଜେନ ଦୂବେ, ଚିଫ୍ ଇଞ୍ଜିନିଅର୍ । ତିନୋଟି ବିଜ୍ଞାନ ପ୍ରଫେସରଙ୍କର ଘରେଇ ଟିଉସନ ପରେ ମୁଁ ଜୀବନରେ କେବେ ହେଁ ଦ୍ୱିତୀୟ ହୋଇନି । ମୋର ପିତା ଦେଶର ଅଧିକାଂଶ ନଦୀ ବନ୍ଧ ଯୋଜନା, କୋଠାବାଡ଼ି, ରାସ୍ତାଘାଟର ମୁଖ୍ୟ ଭବରେ, ମନୋରମ ମାର୍ବଲ ଫଳକ–ମାନ ବସାଇ ଜାଳଜୟୀ ବେଦୀମାନଙ୍କରେ ଆପଣାକୁ ମୁଦ୍ରିତ କରିବାରେ ମାତି ଯାଇଥିଲେ, ଆଉ ଗଢୁଥିଲେ ମୋତେ ତାଙ୍କର ଛାଞ୍ଚରେ । ମୋ ନାମରେ ଏକାଧିକ ପ୍ରାସାଦ ପ୍ରତିଷ୍ଠା ପରେ ସେ ପ୍ରାଣ ତ୍ୟାଗକଲେ । ଅଜସ୍ର ସମ୍ପତ୍ତି ମୋତେ ଉତ୍ତରାଧିକାରୀ ସୂତ୍ରରେ ମିଳିଥିଲା ଏବଂ ପିତାଙ୍କର ପଇସାର ପାଠରେ ମୁଁ ବିଦେଶୀ ବିଶ୍ୱ ବିଦ୍ୟାଳୟମାନଙ୍କରୁ ମେନେଜ୍‌ମେଣ୍ଟରେ ଡ଼ିଗ୍ରୀ ପାଇ ଯାଇଥିଲି, ଗୋଟାଏ ବିଶାଳ କମ୍ପାନୀର ପରିଚାଳନା ଦାୟିତ୍ୱ ନେଇ ।

ବାଲ୍ୟବନ୍ଧୁ ବିଶୁ ରହୁଥାଏ ବଡ଼ବିଲ୍‌ରେ । ସେଇଠି ତାକୁ ସାକ୍ଷାତ ପାଇଁ ଯାଇଥିଲି । ଅର୍ଥାଭାବରେ ବିଶ୍ୱରଞ୍ଜନ ଆଉ ପାଠ ପଢୁ ନଥାଏ । ତାର ବାପା ଥିଲେ ବୁଲଡୋଜର ଡ୍ରାଇଭର ଖଣି ମାଲିକଙ୍କର । ତାଙ୍କର ହଠାତ୍ ହାତଗୋଡ଼ ଅଚଳ ହୋଇଗଲା, ଆର୍ଥରିଟିସ୍ ଓ ପାରଲିସିସ୍‌ରେ । ବିଶୁ ଅଧାବେଳା ଶ୍ରମିକ ଏବଂ ଅଧାବେଳା ସ୍କୁଲ ଯାଇ ମେଟ୍ରିକ୍ ପାସ୍ କଲା, କିନ୍ତୁ କଲେଜ୍‌ରେ ଦୁଇଥର ଫେଲ୍ ହୋଇଯାଏ ।

ମୋତେ ଅଗ୍ରନକ ତାର କୁଡ଼ିଆ ଘରେ ଦେଖି ସେ ଭେ ଭେ କାନ୍ଦି ଉଠିଥିଲା । ବାପର ଚାକିରୀ ପରେ, ମାଆ ବାପାଙ୍କୁ ପୋଷୁଥିଲା ବିଶୁ । ଖଣି ଶ୍ରମିକ ଭାବରେ ମଜୁରୀ କରୁଥାଏ ହଠାତ୍ ନେତାମାନେ, ଧର୍ମଘଟ ଡାକରା ଦେଲେ

ବିଶୁର ସମସ୍ତ ଆୟ ସରିଗଲା । ମାଆ ଶୁଖି ଶୁଖି ମରିଗଲେ । ସେଇ ସକାଳରେ ହିଁ ନାର ବାପା ଭୋକ ଉପାସରେ ମରିଯାଇ ଥାଆନ୍ତି, ତାଙ୍କର ଶବ ପାଖକୁ ବିଶୁ ମୋତେ ଘେନିଗଲା । ଅନେକ କାନ୍ଦିଲା ।

ଏଇ ବିଶୁ ମୋଠାରୁ ଅଧିକ ବୁଦ୍ଧିମାନ୍ । ବିଶୁ ବାପାର ଶବ ଏବଂ ବିଶୁର କଙ୍କାଳସାର ଚେହେରା ଦେଖି ମୁଁ ଚମକି ପଡ଼ିଥିଲି । ମୋ ପାଖରେ ଯେଉଁ ପଇସା ଥିଲା ସେଥିରେ କାଠ କିଣି, ବିଶୁର ବାପାକୁ ଦିହେଁ କୋକେଇରେ କାନ୍ଧେଇ ନେଇଥିଲୁ । ତା ସାଙ୍ଗରେ କାନ୍ଧେଇ ଥିଲି ମୋର ବିଶ୍ୱ ବିଦ୍ୟାଳୟର ଡ଼ିଗ୍ରୀ ଓ ପ୍ରମାଣ ପତ୍ର, ପୁଞ୍ଜିବାଦୀ ପ୍ରେକ୍ଷାଳୟରେ ଅଭିଜ ତ୍ୟ ଡାରକାର ପୋଷାକ ।

ଶବ ସ୍ଥାପନା ପରେ ଚିତାରେ ବିଶୁ ଅଗ୍ନି ସଂଯୋଗ କଲା । ମୁଁ ମୋର ସମଗ୍ର ଡ଼ିଗ୍ରୀ ଭରା ସୁଟକେଶ୍‌ଟି ଥୋଇଦେଲି ସେଇ ଚିତାଗ୍ନିରେ । କିନ୍ତୁ ବିଶୁ ଲମ୍ଫ ପ୍ରଦାନ କରି ଓଟାରି ଆଣିଲା ସେଇ ସୁଟ୍‌କେଶ୍ । ମୋତେ ଧିକ୍‌କାର କରି କହିଲା—ତହିଁରୁ ଖଣ୍ଡିଏ ପାଇଥିଲେ ତାର ବାପ ମା' ମରି ନଥାନ୍ତେ ଅକାଳରେ, ସେ ମରନ୍ତା ନାହିଁ ପ୍ରତିଦିନ ।

ମୁଁ କହିଲି, " ବିଶୁ ସେଇ ପ୍ରତାରଣାର ପ୍ରମାଣ ପତ୍ର ମୋର ଆଉ ଦରକାର ନାହିଁ । ଚିତାଗ୍ନିରେ ଅର୍ପିତ କୌଣସି ବସ୍ତୁ ସ୍ପୃଶ୍ୟ ନୁହେଁ । ପ୍ରମାଣ ପତ୍ର ବିନା କେଇଟି ଦିଆସିଲି କାଠିରେ ମୁଁ ଏଇ ବୁର୍ଜୁଆ ସମାଜକୁ ଜାଳି ଦେବାର ଶପଥ ନେଇଛି । ବରଂ ତୁ ସେଇ ସବୁକୁ ଅଗ୍ନିରୁ ଉଦ୍ଧାର କରିଛୁ, ତୁ ପ୍ରେମରଞ୍ଜନ ବନିଯା । ସେଥିରେ କିଛି ପଇସା ଅଛି । ହଜାରେ ଟଙ୍କାର ମାଛ ମାଂସ ଖାଇଲେ ତୁ ମୋ ଭଳି ଚେହେରାଟିଏ ପାଇଯିବୁ ।

ତାପରେ ମୁଁ ଆସିଲି ଏଇ ବିପ୍ଳବୀ ଶିବିରର ନେତୃତ୍ୱ ନେଇ । ଆଉ ବିଶ୍ୱରଞ୍ଜନ ଜଣେ ଲକ୍ଷ ଖିଆ ବିଡ଼ିଓ ଠାରୁ ଆପଣା ଫଟୋଟି ପ୍ରେମରଞ୍ଜନ ଦୁବେ ନାମରେ ପ୍ରମାଣିତ କରି ଗଳୁତି କରୁଛି ଗଲା ୧୫ ବର୍ଷ ହେଲା । ଆହାଃ ବିଚରା ! କି ନିର୍ଯ୍ୟାତନା ସେ ନପାଉଛି । ତାର ସଫଳତା ପାଇଁ ଡ଼ିଗ୍ରୀଟାକୁ ଦାୟୀ କରିବା ତମର ଭୁଲ୍ । ମୋର ପ୍ରିୟ ବନ୍ଧୁ ବିଶୁ ଏବେ ମଧ୍ୟ ସେ ତାର ସମସ୍ତ ଦରମା

ଆମ ପାଖକୁ ପଠାଏ । ମୋର ଉପଦେଷ୍ଟା ସଂଖ୍ୟା ଏଯାଏଁ ସେ ବିବାହ କରିନାହିଁ । ଯାଅ ତମକୁ ଏଇଠି ଛାଡ଼ି ଦେଉଛି ଏଇ ସତ୍ୟକୁ ଜାଣିବାକୁ ଚେଷ୍ଟା କର—ଡ଼ିଗ୍ରୀରେ ମଣିଷକୁ ତୁଳ ନାହିଁ । ମନେରଖ, ଏହା ଯଦି କେବେ ପ୍ରକାଶ କରିବାର ଦୁଃସାହସ କର, ତମର ଶବ ଆସିବ ମୋ କ୍ୟାମ୍ପକୁ ।"

× × × ×

ଚାରିବର୍ଷ ପରେ, ଦିଲ୍ଲୀ ଅନ୍ତର୍ଜାତୀୟ ବିମାନ ବନ୍ଦରଠାରେ ମୁଁ ବୋଇଂକୁ ଅପେକ୍ଷା କରିଥାଏ, ବାଙ୍ଗାଲୋର ଯିବାପାଇଁ । ମୋ ନିକଟରେ ଜଣେ ଭଦ୍ରବ୍ୟକ୍ତି ଆସି ବସିଲେ । ସୁଟ୍ ପିନ୍ଧି ଥାଆନ୍ତି ଏବଂ ଅନବରତ ଚୁରୁଟ୍ ଟାଣୁ ଥାଆନ୍ତି । ମୁଁ ଚିହ୍ନି ପାରିଲି । ମୁଁ ତାଙ୍କୁ କହିଲି—'ମହାଶୟ ! ଆପଣ କ'ଣ ଅଭିନୟ କରନ୍ତି ?' ସେ ଉତ୍ତର ଦେଲେ—'ନୋ-ନୋ ।'

ମୁଁ କହିଲି- "ଥରେ ମୁଁ ବିଦ୍ୟାଳୟ ଡ୍ରାମାରେ ହନୁମାନ ଭୂମିକାରେ ମୁଖାଟିଏ ପିନ୍ଧି ଲଙ୍କା ପୋଡ଼ି ଦୃଶ୍ୟରେ ଅବତୀର୍ଣ୍ଣ ହୋଇଥିଲି । ଲାଙ୍ଗୁଡ ନିଆଁରେ କାଗଜର ଲଙ୍କା ଗଡକୁ ପୋଡୁଥିବା ବେଳେ, ମୁଖା ଭିତରେ ଏମିତି ଅଣନିଶ୍ୱାସୀ ହୋଇ ପଡ଼ିଲି ଯେ, ହଠାତ୍ ଡ୍ରାଇଲଗ୍ କହୁ କହୁ ଅଜାଣତରେ ମୁଖାଟି ଖୋଲି ଦେଇଥିଲି । ଲୋକେ ବହୁତ ହସିଲେ ମୋର ବୋକାମୀରେ । କିନ୍ତୁ ମୁଁ ଆଜି ଚକିତ୍ ଯେ, ଆପଣ ଦୀର୍ଘ କୋଡ଼ିଏ ବର୍ଷ ହେଲା, ପ୍ରେମରଞ୍ଜନ ତ୍ରନେର ମୁଖାକୁ ବେଶ୍ ଆପଣାର କରି ପାରିଛନ୍ତି । ମୁଁ ବିଶ୍ବରଞ୍ଜନ କ'ଣ ଇଚ୍ଛା କରୁଛି ଜାଣିବାକୁ, ପ୍ରେମରଞ୍ଜନ ବର୍ତ୍ତମାନ କିଭଳି ଅଛି ?'

ଭଦ୍ର ବ୍ୟକ୍ତି ହଠାତ୍ ଚମକି ପଡ଼ି ମୋତେ ଧରି ପକାଇଲେ ଉତ୍ତେଜିତ ଅଥଚ ବୃଦ୍ଧ କଣ୍ଠରେ କହିଲେ—'ତୁମେ କିଏ, ପ୍ରେମରଞ୍ଜନର କ'ଣ ହୋଇଛି ?'

ମୁଁ ତାଙ୍କର ଉତ୍ତର ନଦେଇ କହିଥିଲି, 'ମୋ ସାଥୀରେ, ଯମୁନା ନଗର ସ୍ଲମ୍‌ର ଗୋଟାଏ କୁଡ଼ିଆକୁ ଯାଇପାରିବେ ? ସେଇଠି ସବୁ ଉତ୍ତର ମିଳିବ ।'

ସେ ମୋ ସାଙ୍ଗରେ ଟାକ୍‌ସିରେ ଆସିଲେ, ଗୋଟିଏ ଆବର୍ଜନା ଭିଡ଼ି କୁଡ଼ିଆ ପାଖକୁ ଯେଉଁଠି ଅସାଧ୍ୟ ଲ୍ୟୁକେମିଆର ଶିକାର ହୋଇ ଶେଷ ନିଶ୍ୱାସ

ନେଇଥିଲେ କୁଖ୍ୟାତ ନକ୍ସାଲ୍ ନେତା କମ୍ରେଡ୍ ଗ୍ରିନେଡ୍ ଓରଫ ପ୍ରେମରଞ୍ଜନ ଦୂବେ ।

ବିଶ୍ୱରଞ୍ଜନଙ୍କୁ ଦେଖି ପ୍ରେମରଞ୍ଜନ ଗୋଟାଏ ଦିଆସିଲ ମାଗିଥିଲେ ଏବଂ ବହୁ କଷ୍ଟରେ ଗୋଟାଏ କାଠି କାଢ଼ି, ପୁଣି ବିଶ୍ୱରଞ୍ଜନକୁ ବଢ଼ାଇ ଦେଇ ଢୁଙ୍କି ପଡ଼ିଲେ ଗୋଟାଏ କଡ଼କୁ । ବିଶ୍ୱରଞ୍ଜନ ତାଙ୍କୁ ବିକଳରେ ଜାବୁଡ଼ି ଧରି କାନ୍ଦିଥିଲେ ଏବଂ ଆପଣାର ଲୁହରେ ମୁଖାଟିକୁ ଧୋଇ, ଗୋଟିଏ ଚିଠି ମୋତେ ଦେଲେ, ସାଉଥ୍ ବ୍ଲକରେ ପହଞ୍ଚାଇ ଦେବାପାଇଁ ।

ମୁଁ ଚିଠିଟି ସେଇଠି ଦେଇ, ପୁଣି ଫେରିଲି ବିମାନ ବନ୍ଦର । ସେଇଠି ସମାଗ୍ରର ଦେଉଥାଏ ଟେଲିଭିଜନ୍–"ଟେକ୍ନୋଲେଜି ମିସନ୍‌ର ମୁଖ୍ୟ ପ୍ରେମରଞ୍ଜନ ହଠାତ୍ ନିଜ ପଦରୁ ଇସ୍ତଫା ଦେଇଛନ୍ତି ।"



ଅବସର ପ୍ରାପ୍ତ ବିଶିଷ୍ଟ ସ୍ଥପତି ଦେବବ୍ରତ ମୋର ପଡ଼ୋଶୀ । ରଜଭବନ, ବିଂଶତାବ୍ଦୀ ବିଶିଷ୍ଟ ପଞ୍ଚତାରକା ପର୍ଯ୍ୟଟକ ଆକର୍ଷଣ "ବୈଶାଲୀ" ରେଷ୍ଟୁରାଁ ନାମଜାଦା ଇମାରତ୍ ତଥା ସହରର ସହସ୍ର ବାସଭବନର କଳାତ୍ମକ କଳେବରର କାରିଗର ଦେବବ୍ରତ ।

ସହରକୁ ପ୍ରବେଶ ପଥରେ, ହିଁ ତାଙ୍କର ସୁନ୍ଦର ଅଟ୍ଟାଳିକା । ବିସ୍ତୀର୍ଣ୍ଣ ସବୁଜ ଲନ୍ ମଧ୍ୟଭାଗରେ ଏକ ମନୋରମ ପ୍ରାସାଦ । ସେଇଠି ଦେବବ୍ରତ ଏକା ରହନ୍ତି । ତାଙ୍କ ଘରକୁ ଲାଗି କେଇବଖରା ଟିଣଘର ସେଇଠି ତାଙ୍କର ଗୁକର, ମାଳୀ ଏବଂ ଦରଓ୍ୱାନ୍ ରହନ୍ତି । ଅବିବାହିତ ଦେବବ୍ରତଙ୍କ ସାଙ୍ଗରେ କେଇଦିନ ତଙ୍କର ବୁଢ଼ୀମାଆ ରହୁଥିଲେ । ତାଙ୍କର ଦେହାନ୍ତ ପରେ ଆଉ କୌଣସି ସ୍ତ୍ରୀଲୋକକୁ ସେଇ ଇଲାକାରେ ଗୁଲ୍‌ବୁଲ୍ ହେବା ମୁଁ ଦେଖି ନାହିଁ ।

ଏଭଳି ଏକ ବ୍ୟତିକ୍ରମ ବ୍ୟକ୍ତିତ୍ୱ ସହ ମୋର ସଂପର୍କ କିନ୍ତୁ ବେଶ୍ ଘନିଷ୍ଠ । ଏବେ ଯୌବନଦୀପ୍ତ ସୁଭ୍ରାନ୍ତ ସୌମ୍ୟ ଦେବବ୍ରତ ସଫେଦ୍ ପଂଜାବୀ ଓ ପାଇଜାମା ପିନ୍ଧି ଠିକ୍ ସୂର୍ଯ୍ୟ ଉଦୟ ଆଗରୁ ମୋ ଘର ଆଗରେ ଡାକ ଛାଡନ୍ତି "ଏ କୁମାର୍, ଶୀଘ୍ର ଆ' ଯିବା ବୁଢ଼ା ହେଲୁଣି ବେଶୀ ସମୟ ଶୋଇବା ଭଲନୁହଁ ।"

ଆମେ ଦିହେଁ ମିଶି ଦୁଇ କିଲୋ ମିଟର୍ ଦୂର ଗଜରିଷ୍ଟୋରି ଗୋଟାଏ ପୁରୁଣା ମନ୍ଦିର ପାଖକୁ ଯାଉଁ । ମନ୍ଦିର ସମ୍ମୁଖରେ କେଉଁକାଳର ବିଶାଳ ନାଗଚଂପା ଗଛଟାଏ । ଗଛତଳେ ସିମେଣ୍ଟର ଚଉିତରା । ଆମେ ସେଠିକି ପହଞ୍ଚିଲା କ୍ଷଣି, ତିହାଡ଼ି ପୂଜାରୀ ମନ୍ଦିର ଭିତରୁ ନାଗଚଂପାରୁ ଗୋଟାଏ ଗୋଟାଏ ଏବଂ ପାଦୁକା ଟିକିଏ ଟିକିଏ ଆମ ଉପରକୁ ଫୋପାଡ଼ି ପୂଜା ସମାପନର ସୂଚନା ସହ ଉଚ୍ଚସ୍ୱରରେ କୋଲନ୍ତି—

ତ୍ରିୟମ୍ବକଂ ଯଜାମହେ ସୁଗନ୍ଧି ପୁଷ୍ଟ ବର୍ଦ୍ଧନାଂ
ଉର୍ବାରୁକମିବ ବନ୍ଧନାତ୍ ମୃତ୍ୟୁ ମୁକ୍ଷିୟ ମାଂମୃତାତ୍ ।।

ତାପରେ ସକାଳ ଆଠଟା ଯାଏଁ ସେଇଠି ଗପସପ ଚାଲେ ।

ଏଇମନ୍ଦିର, ଏଇପୂଜାରୀ ଏବଂ ଦେବବ୍ରତ । ପ୍ରଥମେ ତାଙ୍କର ଭେଟହୁଏ ଏକ ନାଟକୀୟ ଘଟଣାରେ ।

କୋଡ଼ିଏ ବର୍ଷ ତଳର ସେଇ ଘଟଣା, ଗସ୍ତାବାଡ଼ି ବିଭାଗର ଅର୍ଥଉପଦେଷ୍ଟା ଭାବରେ ମୁଁ ମଧ୍ୟ ପରୋକ୍ଷରେ ଘଟଣା ସହ ଜଡ଼ିତ । କଥାହେଲା, ପାଞ୍ଚନମ୍ବର ଜାତୀୟ ରାଜପଥ ମାଡ୍ରାସ୍ ଆଉ କଲିକତାକୁ ସଂଯୋଗ କରିବ । କଲିକତା ଆଡୁ ରାଜପଥ ତିଆରି ସରିଲା, ମାଡ୍ରାସ୍ ଆଡୁ ମଧ୍ୟ ତିଆରି ସରିଲା କିନ୍ତୁ ଏହି ସହର ମୁଣ୍ଡରେ ଦିହେଁ ଦିହିଁଙ୍କୁ ଭେଟିବାକୁ ନାରାଜ । ସେଇଟିକକ ହୋଇପାରୁନି କାରଣ ପୁରୁଣା ମନ୍ଦିର ଟାଏ ମଝିରେ ଛିଡ଼ାହୋଇଛି । ମନ୍ଦିର ଦୁଇପାଖରେ ଦୁଇଟି ଉଚ୍ଚ ପାହାଡ଼, ତେଣୁ ରାଜରାସ୍ତା ହୁଏତ ବାଟଭାଙ୍ଗି ଯିବ, ପାହାଡର ଆରପାଖରେ, ନଚେତ୍ ମନ୍ଦିର ଭଙ୍ଗାହେବ ।

ମନ୍ଦିର ସେମିତି କିଛି ବିଖ୍ୟାତ ବା ବିଶାଳ ନୁହେଁ । ତେଣୁ ଜମିଦଖଲ ବେଳେ ମନ୍ଦିର ମଧ୍ୟ ଦଖଲ ହୋଇଗଲା ବିନା ଆପତ୍ତିରେ । ହେଲେ ମନ୍ଦିର ଭାଙ୍ଗିବା ବେଳକୁ ବଂଶାନୁକ୍ରମେ ପୂଜାକରି ଆସୁଥିବା ତିହାଡ଼ିହିଁ ଆପତ୍ତିକଲେ । ସରକାରଙ୍କୁ ଲେଖିଲେ । ସରକାର ତତ୍‌କ୍ଷଣାତ୍ ଆଦେଶ ଦେଲେ, ଜମିଦଖଲ ନିର୍ବିବାଦରେ ହୋଇଥିବା ଯୋଗୁଁ, ଆପତ୍ତି ଶୁଣାନଯାଇ ମନ୍ଦିରହିଁ ଭଙ୍ଗାଯିବ । ଆଦେଶଟି ଆସିଲା ତତ୍‌କାଳୀନ ଜଣେ ପାରଙ୍ଗମ ମୁଖ୍ୟମନ୍ତ୍ରୀଙ୍କ କଲମରୁ, ଯୋଗକୁ ସେ ଥିଲେ ଜଣେ ଅଣହିନ୍ଦୁ । ଅବଶ୍ୟ ମନ୍ଦିର ଭଙ୍ଗା ବିରୋଧରେ କୌଣସି ହିନ୍ଦୁ ଆପତ୍ତି କରିନଥିଲେ ଏକା ତିହାଡ଼ି ବ୍ୟତିରେକେ । କିନ୍ତୁ ଗୁରୁତର ସମସ୍ୟା ହେଲା ମନ୍ଦିରକୁ ଭାଙ୍ଗିବ କିଏ । କୌଣସି ମିସ୍ତ୍ରୀ, କୁଲି ମଜୁରିଆ ଧମକ ସତ୍ତ୍ୱେ ରାଜିହେଲେ ନାହିଁ ।

ଦେବବ୍ରତ ବିଦେଶରୁ ଫେରି ରାଜ୍ୟର ମୁଖ୍ୟ ସ୍ଥପତି ଭାବରେ ଯୋଗ ଦେଇ ଥାଆନ୍ତି । ସମସ୍ତେ ଜାଣନ୍ତି ଯେ ଏଇ ସାହାବ ମନ୍ଦିର, ପୂଜାରୀଙ୍କୁ ଖାତିର୍ କରିବା ଲୋକ ନୁହେଁ । ତାଙ୍କ ଭାଗରେ ପଡ଼ିଲା ଏଇ ସମସ୍ୟାର ସମାଧାନ ।

ଦେବବ୍ରତ ତଥା ଅନେକ ବିଶିଷ୍ଟ ଅଫିସର୍ ସର୍‌ଜମିନ୍ ତଦନ୍ତ ପାଇଁ ହାଜର ହେଲେ । ପାଖରେ ବିରାଟ ବୁଲ୍‌ଡୋଜର୍ ମୁଖ୍ୟମନ୍ତ୍ରୀଙ୍କ ଆଦେଶରେ

ରଖାହୋଇଛି । ଗ୍ରନ୍ଥକ କିନ୍ତୁ ଫେଗର୍ । ନିଜେ ଦେବବ୍ରତ ବୁଲ୍‌ଡୋଜରରେ ଚଢ଼ିଲେ ମନ୍ଦିର ପାଖକୁ ନେଇଗଲେ ।

ତିହାଡ଼ି ପୂଜାରୀ କିଛି ନାଗଚଂପା ଏବଂ ପାଦୁକ ଆଣି ଉପସ୍ଥିତ ହେଭିଙ୍କୁ ଦେଲେ । ହାତଟେକି ଦେବବ୍ରତଙ୍କୁ ମଧ୍ୟ ଫୁଲ ଓ ପାଦୁକ ଦେଲେ । ଦେବବ୍ରତ ଗମ୍ଭୀର ହୋଇ ଗ୍ରହଣ କଲେ । ପୂଜାରୀ ଦେବବ୍ରତଙ୍କୁ ବଡ ବିନୟରେ ଯୋଡହାତ ହୋଇ ବୁଝାଇଲେ "ଆଜ୍ଞା ! ମନ୍ଦିରଟି କେଉଁକାଳର । ଆମ ବାପା ଗୋସବାପା ଅମଳରୁ ଆମେ ଏଠି ପୂଜା ଅର୍ଚ୍ଚନା କରୁଛୁଁ । ରାଜରାସ୍ତାର ନକ୍‌ସା ଟାଣୁଥିବା ଅମୀନକୁ ପାହାଡତ ଦୃଶିଲା ଏଇ ମନ୍ଦିର ଦୃଶିଲା ନାହିଁ କେମିତି ? ହେଇଥିବ ସେ କଳାପାହାଡ଼,, ହେଲେ ମୁଁ ତ ଗରିବ ବ୍ରାହ୍ମଣ, ଏଇ ଜାତିର ଗତିକୁ ମୁଁ ରୋକିପାରିବି କାହିଁ । ଯାଅ ବାବୁ, ପ୍ରଥମେ ତମ ହାତରେ ମନ୍ଦିର ଚୂଡ଼ାରୁ ଦଧି-ନଉତିକୁ ଓଟାରି ତଳକୁ ଫିଙ୍ଗିଦିଅ । ତାପରେ ଚଢ଼େଇଦବ, ଏଇଗାଡ଼ି ଆଖିରେ ଦେଖିବି ଆଉ ଗୋଟାଏ ଧର୍ମପଦ ।"

ମୁଁ ଦେବବ୍ରତଙ୍କୁ ଲକ୍ଷ୍ୟ କରୁଥାଏଁ । ସାଥୀରେ ଆସିବାବେଳେ, ଅନେକ ଉଦାହରଣ ଦେଇ ଧର୍ମାନ୍ଧତା କିଭଳି ପ୍ରଗତିର ପଥରୋଧ କରୁଛି ସେ ବିଷୟରେ କହୁଥିଲେ । କେଉଁ ଭଣ୍ଡ ବାବାଜୀଟାଏ ଦିପଇସା ଅର୍ଜ୍ଜିବା ପାଇଁ ଏମିତି ଗୁରୁତ୍ୱ-ପୂର୍ଣ୍ଣ ରାଜରାସ୍ତାକୁ ଆକଟ କରିବସିଛି, ଆସର୍ଯ୍ୟବା ମୁଁ ଦେଖୁଛି ରାସ୍ତା କେମିତି ବନିବ ନାହିଁ ।"

ଦେବବ୍ରତ ପୂଜାରୀଙ୍କ କଥା ଶୁଣି ତଳକୁ ଆସିଲେ । ନିରବରେ ନିକଟସ୍ଥ ପାହାଡ଼ ଆଡ଼କୁ ଚାଲିଲେ । ପଛରେ ସହକାରୀ ମାନେ । କିଛି ସମୟ ସବୁଦିଗକୁ ଘୁରି ପୁଣି ମନ୍ଦିର ପାଖକୁ ଆସିଲେ । ସମସ୍ତେ ଉଦ୍‌ବିଗ୍ନ । ଦେବବ୍ରତ ପୂଜାରୀଙ୍କୁ ଡାକି କହିଲେ 'ବୁଝିଲ ପୂଜାରୀ–ତମ ଈଶ୍ୱର ଜିଣିଲେ–ତମେ ପୂଜାପାଠକର ।"

ତହିଁ ଆରଦିନହିଁ ରାଜରାସ୍ତା ବାଟଭାଙ୍ଗି ପାହାଡ଼ ଆଡ ପାଖକୁ ଚାଲିଗଲା, ମନ୍ଦିରକୁ ସମ୍ମାନ ଜଣାଇ । ଏବେ ମଧ୍ୟ ସେଇ କଥା ପଡ଼ିଲେ ସେ ସ୍ପଷ୍ଟ ଭାବରେ କହନ୍ତି ମୋ ସେଦିନର ବିଚାର ତାଙ୍କର ସ୍ୱାଭାବିକ ନଥିଲା ।

ଏବେ କିନ୍ତୁ ଦେବବ୍ରତ ନାଗଚମ୍ପା ଛାଇରେ ତିହାଡ଼ୀ ପୂଜାରୀଙ୍କର ପ୍ରାରବ୍ଧ, ପରଜନ୍ମ ଓ ପରମେଶ୍ୱରଙ୍କ ସମ୍ବନ୍ଧରେ ଯାବତ୍ ଅବୈଜ୍ଞାନିକ ତତ୍ୱକୁ ବେଶ୍ ଉପଭୋଗ କରନ୍ତି ।

ଦେବବ୍ରତ ବାହା ହେଲେ ନାହିଁ କାହିଁକି ? ସିଧା ସକଥା ତାଙ୍କୁ ପଚାରିବା ସମ୍ଭବ୍ ହୋଇନାହିଁ । ଦିନେ ତାଙ୍କୁ ପରିହାସ ଛଳରେ କହିଲି "ବାହା ନହୋଇ ଆପଣ ଠିକ୍ କରିଛନ୍ତି । ଆପଣଙ୍କର ରୂପ ଗୁଣର ସମାନ ଝିଅଟେ ଠାକୁର ତ ସୃଷ୍ଟି କଲେନାହିଁ ବାହାହେବେ କାହାକୁ ?"

ଦେବବ୍ରତ ହସିହସି କହିଲେ, "ବୁଝିଲ କୁମାର ଯୁବକ ବେଳେ ମୁଁ ବି ମଝରେ ମୋର ସୌନ୍ଦର୍ଯ୍ୟ, ସମ୍ପତି, ଆଉ ଜ୍ଞାନକୁ ନେଇ ଗର୍ବ କରୁଥିଲି । କିନ୍ତୁ ହଠାତ୍ ଗୋଟାଏ ଘଟଣାରେ ମୋର ମୋହଭଙ୍ଗ ହେଲା ।"

ଆମେ ଉତ୍କଣ୍ଠାରେ ଅନାଇ ରହିଲୁ ।

ଦେବବ୍ରତ ଆରମ୍ଭ କଲେ । ବିଦେଶରୁ ଫେରିଲକ୍ଷଣି ମୋର ବାହାଘର ପାଇଁ ବାପାମାଆ ଝିଅ ଦେଖାରେ ଲାଗିପଡ଼ିଲେ । ଶେଷରେ ଖୁବ୍ ଖାନ୍‌ଦାନୀ ପରିବାରର ଉଚ୍ଚଶିକ୍ଷିତ ଝିଅଟେ ପସନ୍ଦ କଲେ । ମୋତେ ଝିଅଟିକୁ ଦେଖିବାକୁ ବାଧ୍ୟ କଲେ ଏବଂ ଝିଅଟି ସହ ମୋର ସାକ୍ଷାତ ହେଲା । ଗଠନରେ ଥିଲା ଖୁବ୍ ସୁନ୍ଦର । ଇଂରାଜୀରେ ଏମ୍. ଏ. ଶେଷବର୍ଷର ଛାତ୍ରୀ । ନାମ୍‌ଜାଦା ଜମିଦାରଙ୍କର ଏକମାତ୍ର କନ୍ୟା । ଶ୍ରେଷ୍ଠ ସ୍ନାତକ ଭାବରେ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ପାଇଥାଏ । ସାକ୍ଷାତ ବେଳେ ବେଶ୍ ସ୍ୱାଭାବିକ ଭାବରେ କଥାବାର୍ତ୍ତା ହେଲା । ଯଥା ସମୟରେ ନିର୍ବନ୍ଧ ମଧ୍ୟ ହୋଇଗଲା ଏବଂ ତାପରେ—ଓଃ ଛାଡ଼ ସେ କଥା ଝିଅଟି ବିବାହ ଆଗଦିନ, ତାର ସାଙ୍ଗରେ ପଢୁଥିବା ଜଣେ ପିଲାକୁ ବାହା ହେବାକୁ ଜିଦ୍‌କରି ବିଷପାନ କରିଦେଲା ।"

ସେଇ ପ୍ରସଙ୍ଗ ସେତିକିରେ ହିଁ ରହିଲା । ଯାହା ଜଣାପଡ଼େ, ବାପାମାଆ ଆଉ ଯେତେ ପ୍ରସ୍ତାବ ଆଣିଲେ ଦେବବ୍ରତ ମୋଟେ ରାଜିହେଲେ ନାହିଁ । ଆମେ ମଧ୍ୟ ଦେବବ୍ରତଙ୍କୁ ସେ ବିଷୟରେ କିଛି ପଚାରି କଷ୍ଟ ଦେବାକୁ ଚାହୁଁନା ।

ଦିନକର ଘଟଣା । ସବୁଦିନ ଭଳି ପୂଜାରୀ ମୁଁ ଓ ଦେବବ୍ରତ ବାବୁ ବସି ଗପୁଥାଉଁ ନାଗଚମ୍ପାର ଛାଇରେ । ଗଳ୍ପ-ଗପ୍ପାରେ, ମନ୍ଦିର ନିକଟକୁ ଲାଗି, ରହି-ଆସିଲା ସୁନ୍ଦର ବିଦେଶୀ ମର୍ସିଡ଼ିସ୍‌କାର୍ । ଭିତରୁ ବାହାରି ଆସିଲେ ଜଣେ ପରିଚିତ ପ୍ରୌଢ଼ । ବୟସ ଷାଠିଏ ପାଖାପାଖି ହେବ । ଆଖିରେ ଦାମିକା ସୁନାର ଚଷମା, ଦେହରେ ଦାମିକା ସୁଟ୍ । ମନ୍ଦିର ଆଗରେ ଗୋଡ଼ରୁ ଜୋତା ମୋଜା କାଢ଼ି, ନାଗଚମ୍ପା ଗଛର ଛାଇକୁ ଆସିଲେ । ହାତ ପାହାନ୍ତାରେ ଫୁଲଟିଏ ତୋଳି, ପୂଜାରୀଙ୍କ ହାତରେ କେଇଖଣ୍ଡ ନୋଟ୍‌ସହ ନେଇ ବିନମ୍ରରେ କହିଲେ "ମୋତେ ଟିକିଏ ପାଦୁକ ଦେବେ ?"

ଯଥାରୀତି ପୂଜାରୀ ଫୁଲନେଇ ଠାକୁରଙ୍କୁ ଦେଇ, ତାଙ୍କୁ ପାଦୁକ ଦେଲେ । ତାପରେ ଭଦ୍ରବ୍ୟକ୍ତି କହିଲେ "ପୂଜାରୀ ମହାଶୟ ! ମୋର ପରିବାର ସହ ଆସନ୍ତାକାଲି ମୁଁ ଏଠି ଠାକୁରଙ୍କଠାରେ ଅନ୍ନଭୋଗର ବ୍ୟବସ୍ଥା କରିବାକୁ ଚାହେଁ । ଆପଣଙ୍କ ପାଖରେ ଭୋଗବାସର ବ୍ୟବସ୍ଥା ଅଛିକି ? ପୂଜାରୀ ବିନମ୍ରରେ କହିଲେ "ଆଜ୍ଞା, ଦି ପୁଞ୍ଜା ଖଇଭଖୁଡ଼ା ଆଉ ବେଲପତ୍ରୀରେ ଠାକୁର ସନ୍ତୁଷ୍ଟ । ପାରିବା ଲୋକ ନଡ଼ିଆ କଦଳୀ ଆଣନ୍ତି । ଶିବ ଚତୁର୍ଦ୍ଦଶୀ ଆଉ କାର୍ତ୍ତିକ ପୂର୍ଣ୍ଣମୀକୁ ଯେଇ ପାଖ ସାଇର ପିଲମାନେ, ଚାନ୍ଦାଭେଦା କରି କ୍ଷୀରି ଖେଚଡ଼ି ସହ ଦରୀଦ୍ର ନାରାୟଣ ଭୋଜନ କରନ୍ତି । ମନ୍ଦିରରେ ଭୋଗବାସର ବ୍ୟବସ୍ଥା କହିଲେ, ମୋ ନିଜପାଇଁ ଅନ୍ନଗଣ୍ଡେ ଡାଲିଟିଏ ଫୁଟାଇ ଦିଏଁ, ସିଏ ଆପଣଙ୍କ ଯୋଗ୍ୟ ନୁହେଁ ।"

ଭଦ୍ରବ୍ୟକ୍ତି ପୁଣି କହିଲେ "ପୂଜାରୀ ମହାଶୟ ! ଏଇ ପାଞ୍ଚଶହ ଟଙ୍କା ନିଅ, ତମ ମନକୁ ଯେମିତି ଲାଗୁଛି ସେମିତି ଆମ ପରିବାରେ ଚାରି, ମୋ ଡ୍ରାଇଭର୍ ସହ ପାଞ୍ଚ ସାଥୀରେ—ଏଇ ବାବୁମାନଙ୍କୁ ନିମନ୍ତ୍ରଣ ଜଣାଉଛି—ସଭିଏଁ ମିଶି ଏଇଠି ଆସନ୍ତାକାଲି ଅନ୍ନସେବନ କରିବା, ଆଉ ଦରକାର ହେଲେ ଦେବି ।"

ଆମ ଦିହିଙ୍କୁ ଲକ୍ଷ୍ୟ କରି କହିଲେ "କ୍ଷମା କରିବେ ମହାଶୟ ! ମୋର ଗୋଟାଏ ମାନସିକ ଥିଲା, ଏଇଠି ଟିକିଏ ଅନ୍ନ ଭୋଗରାଗ କରିବି । ଆପଣ ଦିହିଁଙ୍କୁ ମୋର ନିମନ୍ତ୍ରଣ ରହିଲା । କାଲି ଦଶଟାରେ ଆମେ ଆସିବୁଁ ନିଶ୍ଚୟ ଆସିବେ ।"

ଭଦ୍ରବ୍ୟକ୍ତି ତାପରେ ଗ୍ଳିଗଲେ ଏବଂ ପୂଜାରୀ କହିଲେ "ଏଛତ ବଡ଼ ବିପତ୍ତି ଆଜ୍ଞା, କେତେ ବଡ଼ଲୋକ, କେତେ କଥା ବଗଦ କରିଗଲେ । ପ୍ରଭୁହେ ! ମୋତେ ସହାୟ ହୁଅ ।

ଦେବବ୍ରତ କିଛୁ ବଡ଼ ବିରକ୍ତ ହୋଇ କହିଲେ "ହଇହୋ, ଲୋକଟା ଆମକୁ ଭାବିଲା କ'ଣ କି ? ଆମେ କ'ଣ ବଡ଼ଦାଣ୍ଡର ଶ୍ରାଦ୍ଧଡ଼ାକର ପଣ୍ଡା ?"

ପୂଜାରୀ ବିଚରା କଥାଟାକୁ ସହଜ କରି କହିଲେ 'ଅଜ୍ଞା, ବାବୁଙ୍କୁ କି ଜଣା ଆପଣ କିଏ । ଠାକୁରଙ୍କୁ ସାଖୀଚାଖି ନିମନ୍ତ୍ରଣ କରିଗଲେ, ଆପଣ କି ବାବୁ ଅନ୍ନ-ଭୋଗକୁ ଅନାଇ ରହିବେ, ତେବେ, ଠାକୁରଙ୍କ ନାମରେ ଭୋଗ ଟିକିଏ ପାଇଯିବେ । ମୁଁ ଯଥାସାଧ୍ୟ ବ୍ୟବସ୍ଥା କରିବି ।"

ଦେବବ୍ରତ କ'ଣ ଭାବିଲେ କେଜାଣି, କହିଲେ "ନିଶ୍ଚୟ ଆସିବା" ।

ଆରଦିନ ମନ୍ଦିର ପହଞ୍ଚିଲୁ ଆମେ ଦିହେଁ । ଆମ ଆଗରୁ ଭଦ୍ରବ୍ୟକ୍ତି ପରିବାରସହ ଆସିଥାଆନ୍ତି । ମନ୍ଦିର ଭିତରେ ପୂଜାରୀ ଠାକୁରଙ୍କର ଜଳଶାୟି ପରେ ମନ୍ତ୍ରପାଠ କରୁଥାଆନ୍ତି ଏବଂ ସେଇଠି ଭଦ୍ରବ୍ୟକ୍ତିଙ୍କ ସ୍ତ୍ରୀ ଠାକୁରଙ୍କୁ ପ୍ରମାଣ କରି ବସିଥାଆନ୍ତି ।

ଆମେ ପହଞ୍ଚିବାକ୍ଷଣି ଭଦ୍ରବ୍ୟକ୍ତି ଉଠିଆସି କାର୍‌ପେଟ୍ ବିଛା ଚଟ୍ଟତଗକୁ ପାଛେ ଟି ନେଲେ । ସେଇଠି ବସିଥାଆନ୍ତି ତାଙ୍କର ପୁଅ ଏବଂ ଝିଅ । ଖୁବ୍ ସୁନ୍ଦର ଦେଖିବାକୁ । ଦିହେଁ ଆମକୁ ନମସ୍କାର ଜଣାଇଲେ ଏବଂ ଭଦ୍ରବ୍ୟକ୍ତି ଦହିଙ୍କର ପରିଚୟ ଦେଲେ "ଇଏ ମୋ ପୁଅ ସୁବ୍ରତ ! ଇଲେକ୍‌ଟ୍ରନିକ୍‌ସ୍ ଇଂଜିନିୟର୍, ଆମେରୀକାରେ ରହୁଛି । ମୋ ଝିଅ, ପ୍ରାଣୀ ବିଜ୍ଞାନରେ ଶେଷ ବର୍ଷ ପଢୁଛି ।"

ଆମର ମନେହେଲା ପୂଜାରୀ ସେମାନଙ୍କୁ ଆମର ପରିଚୟ ଜଣାଇ ଦେଇଥାଆନ୍ତି । ତାଙ୍କର ଆଗ୍ରର ବ୍ୟବହାର ଥିଲା ବେଶ୍ ସଙ୍ଗତ ଏବଂ ସମ୍ଭ୍ରାନ୍ତ । ଝିଅଟି ହିଁ ପ୍ରଥମେ ଆରମ୍ଭ କରି କହିଲା "ମଉସା ! ଆମ ବାପା ବଡ଼ ପୁରୁଣା କାଳିଆ ଲୋକ । ଏଇ ଠାକୁରଙ୍କ ଉପରେ ତାଙ୍କର ବଡ଼ ବିଶ୍ୱାସ । ବିଶେଷତଃ ଏଇ ନାଗଚମ୍ପାଙ୍କୁ ସେ ବଡ଼ ଜୋର୍ ମାନନ୍ତି । ସେ ପରା ଜିଦ କରୁଛନ୍ତି, ଏଇ ଠାକୁରଙ୍କ ପାଖରେ ଶହେ ଚମ୍ପା ଚଢ଼ା ହେବ, ସେଥିରୁ ଗୋଟାଏ ନେଇ ଭାଇଯିବ ଝିଅ ଦେଖିବାକୁ ।"

ଭଦ୍ରବ୍ୟକ୍ତି ଚଉତରା ଉପରେ ଗୋଟାଏ ସୁନ୍ଦର ପାଛିଆରେ ହାତ ପାହାନ୍ତାର ନାଗଚମ୍ପା ସବୁ ସଂଗ୍ରହ କରୁଥାଆନ୍ତି । ଝିଅର କଥା ଶୁଣି ଆମ ପାଖକୁ ପାଛିଆ ସହ ଆସି ଫୁଲ ସବୁ ବାଛିଲେ । ମୁଁ ପଗ୍ଚରିଲି "କ'ଣ ଆଜ୍ଞା ! ପିଲାଏ ବିଜ୍ଞାନର କେତେକଥା ପଢିଲେଣି, ତାଙ୍କ ଉପରେ ଆପଣଙ୍କର ବିଶ୍ୱାସ ନଦି ଦେଉଛନ୍ତି କାହିଁକି ? ଆମ ସମୟର ସଂସାର କ'ଣ ଅଛି ?"

ଭଦ୍ରବ୍ୟକ୍ତି ଦୀର୍ଘଶ୍ୱାସ ନେଇ ଆରମ୍ଭ କଲେ ଏକ କାହାଣୀ ।

"ଶୁଣନ୍ତୁ ଆଜ୍ଞା, ଅନେକ ଦିନ ତଳର କଥା । ସେତେବେଳେ ଏ ସହର ଏଠି ନଥାଏ ! ଏଇଠୁଁ ଗ୍ଚରିମାଇଲ ଦୂରରେ ମୋର ମାମୁଁ ଘର । ମୋ ବାପା ଥିଲେ ଅତ୍ୟନ୍ତ ଗରିବ । ପାଠ ପଢିବି ବୋଲି ମାମୁଁ ଘରେ ଛାଡ଼ିଦେଲେ । ସେଇ ଗାଆଁରେ ରହି ମୁଁ ପାଠ ପଢିଲି । କଲେଜ୍ ଯାଏଁ ଗଲି, କିନ୍ତୁ ହଷ୍ଟେଲ୍‌ରେ ରହିବା ପାଇଁ ପଇସା ନଥାଏ । ଗାଁଆରୁ କଟକକୁ ଏଇ ମନ୍ଦିର ଦେଇ ରାସ୍ତା ଟିଏ ଥାଏ । ସାଇକେଲ୍‌ରେ ମୁଁ ପ୍ରତିଦିନ କଲେଜ୍ ଯାଏଁ ।

ଏଇ ମନ୍ଦିରକୁ ଆସିଲା ବେଳକୁ ବଡ଼ ଥକକା ଲାଗୁଥାଏ, ଏଇ ନାଗଚମ୍ପା ଗଛ ଛାଇରେ କିଛି ସମୟ ବସିଯାଏଁ । ପ୍ରତିଦିନ ଗୋଟାଏ ଚମ୍ପା ଫୁଲ ଠାକୁରଙ୍କ ଆଡ଼କୁ ଫୋପାଡ଼ି, ବିଶ୍ୱାସ ଅବିଶ୍ୱାସର ପ୍ରଣାମ ଜଣାଇ କଲେଜ୍ ଯାଏଁ ।

ଦିନକର ଘଟଣା । ଆମର କଲେଜ୍‌ର ଶେଷଦିନ । କେବଳ ପରୀକ୍ଷା ବାକି । ସେଦିନ ଲାଇବ୍ରେରୀର ସମସ୍ତ ବହି ଫେରାଇବାକୁ ପଡ଼େ । ସାଇକେଲ୍ ପଛରେ ଗୋଛାଏ ବହି ବୋହି କଲେଜ୍ ଯାଉଥାଏଁ । ଟିକିଏ ଚଳ୍‌ଦିରେ ଥାଏଁ । ମନ୍ଦିର ପାଖରେ ଆଉ ସାଇକେଲ୍ ନରଖି ସିଧା ଗ୍ଚଲିଛି, ଠିକ୍ ପଛରୁ ମନ୍ଦିରରେ ପୂଜା କରୁଥିବା ଦାଢିଆ ପୂଜାରୀ ମୋତେ ପଛରୁ ଡ଼ାକିଲେ "ଆରେରେ ପୁଅ ! ଆଜି କ'ଣ ଠାକୁରଙ୍କୁ ଭୁଲିଗଲୁ । ଏଇନେ, ଫୁଲ ଚଢ଼ାଇଲି ଠାକୁରଙ୍କ ପାଖରେ । ଠାକୁରଙ୍କର ଶିରରୁ ଖସିଛି ନାଗଚମ୍ପା, ସାବଧାନରେ ନେଇଯାଆ, ତୋର ସମସ୍ତ ମନସ୍କାମନା ପୂର୍ଣ୍ଣହେବ ।"

ମୁଁ ହସିହସି ଫେରିଲି ଫୁଲଟି ନେଇ ବହି ମଝିରେ ରଖି ଗ୍ଚଲିଲି ।

ଲାଇବ୍ରେରୀରେ ବହି ସବୁ ଜମାକଲି । ଦେଖିଲି ଆମ କ୍ଲାସ୍‌ର ଝିଅପିଲା-ମାନେ ବହି ଫେରଇବା ପାଇଁ ଧାଡ଼ି ବାନ୍ଧିଲେଣି । ମୋର ପଛକୁ ଥାଏ, ସବୁଠୁଁ ସୁନ୍ଦର ଝିଅ । ରାୟସାହେବଙ୍କ ଏକମାତ୍ର କନ୍ୟା । ଦୁଇଦିନ ଆଗରୁ ତାର ବାହାଘର ନିମନ୍ତ୍ରଣ ପତ୍ର ଆମ ଶ୍ରେଣୀର ସମସ୍ତଙ୍କୁ ଦେଇଥାଏ । ମାତ୍ର ଦଶଦିନ ପରେ ତା'ର ବିବାହ ତାରିଖ । ସେତ କେବଳ ସବୁଠୁଁ ସୁନ୍ଦରୀ ନଥିଲା, ସବୁବେଳେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପାଇ ଆସୁଥିଲା । ଆଉ ମୁଁ ନିହାତି ମାମୁଲି ଦ୍ୱିତୀୟ ଶ୍ରେଣୀର ଅନାମଧେୟ, ତା ସହ ପଦୁଟିଏ କଥାହେବାର ମଧ୍ୟ କଲେଜ୍ ଜୀବନରେ ସମ୍ଭବ ହୋଇନଥିଲା । ମୋ ସହ ବା ତା'ର ସମ୍ପର୍କ କ'ଣ ।

ସେ ଯାହାହେଉ, ତରବରରେ ବହିଫେରାଇ କଲେଜ୍ ହଲ୍‌ରେ ଆୟୋଜିତ ବିଦାୟ ସଭାକୁ ଗ୍ଲଲିଲି ।ଆଗ ପାଞ୍ଚଛଅ ଧାଡ଼ି ଖାଲିଥାଏ, ତା ପଛକୁ ଅନ୍ୟ ସାଙ୍ଗ-ମାନଙ୍କ ସହ ଯାଇ ବସିଲି ।

କିଛି ସମୟ ପରେ ସଭା ଆରମ୍ଭ ହେଲା । ଝିଅ ପିଲାମାନେ ଆମ ଆଗ ଧାଡ଼ିରେ ଆସି ବସିଲେ । ଯୋଗକୁ ମୋର ଠିକ୍ ସମ୍ମୁଖରେ ବସିଥାଏ ସେଇଝିଅ । ତାର ଦୀର୍ଘ ବେଣୀଟି ଓହଳି ମୋର ସାମ୍ନା ମେଜରେ ପଡ଼ିଥାଏ । ମୁଁ ଖୁବ୍ ନିକଟରୁ ତାକୁ ଦେଖିଲି । ଦିହରେ ଗୋଟାଏ ଶିହରଣ ଖେଳିଯାଉଥାଏ । ହଠାତ୍ ତାହାର ମୁଣ୍ଡକୁ ଲକ୍ଷ୍ୟକରି ମୁଁ ଚମକି ପଡ଼ିଲି । ବେଣୀ ଶେଷରେ ଠିକ୍ ପଛକୁ ଗୋଟାଏ ସୁନାକ୍ଲିପ୍‌ରେ, ଶୋଭପାଇଥାଏ, ନାଗଂଚପାଟି । ମୁଁ ମୋର ବେଗ୍ ଖୋଲି ଦେଖିଲି ମୋର ନାଗଚଂପା ନାହିଁ । ମନେପଡ଼ିଲା, ତରବରରେ ଲାଇବ୍ରେରୀ ଟେବୁଲ୍ ଉପରେ ବହିଫେରାଇବା ବେଳେ, ଫୁଲଟି ମୋର ଛାଡ଼ି ଆସିଥିଲି ।

ମନେମନେ ହସିଲି । ଖୁବ୍ ଆନନ୍ଦ ଲାଗିଲା । ମୋର ମନେହେଉଥାଏ, ନାଗଚମ୍ପା ଯେମିତି ମୋତେ ନିନିର୍ମେଷରେ ଗ୍ଲହିଁ କହୁଛି "ହେଇ ମୁଁ ତାକୁ ଛୁଇଁଛି ।

ଏ ସମୟରେ ସାମ୍ନାଝିଅଟି, ନିଜ ବାଆଁ ହାତରେ ଆଙ୍ଗୁଠିରେ ଫୁଲଟିକୁ ଆଉଟିକିଏ ସଜାଡ଼ି ଦେଉଥାଏ । ଭାଷଣ ଶୁଣୁଥିବା ଅବସ୍ଥାରେ ଅନ୍ୟମନସ୍କ ଥାଏ ନାଁ କ'ଣ ତାର ଆଙ୍ଗୁଳି ଉପରେ ଫୁଲଟି ଆସି ଖସିଲା ମୋର ହାତରେ ।

ମୁଁ ଏଥର ସତରେ ଚମକିପଡ଼ିଲି । ଝିଅଟି କିନ୍ତୁ ମଥା ପଛରୁ ବେଣୀକୁ ବାଆଁ ହାତରେ ଓଟାରି, ସେଇ ଫୁଲ ଥିବା ଜାଗାକୁ କଲମ ମୁନରେ ଖୋଞ୍ଚି ହେଉଥାଏ ।

ମୁଁ ଫୁଲଟିକୁ ଆଗ୍ରହରେ ହାତରେ ଧରିଲି । ସେ ସମୟରେ ମୋ ପାଖରେ ଥାଏ ପିତଳର ଚଷମାଖୋଳ । ଖୋଳରେ ଫୁଲଟିକୁ ପୂରାଇ ମୁଁ ପ୍ରକୃତିସ୍ଥ ହେଲି ।

ସନ୍ଧ୍ୟା ସାଙ୍ଗ ହେଲା । ବାହାରେ ଭୋଜି ଆୟୋଜନ ଚାଲିଥାଏ । ମୋତେ କେମିତି ନିଦୁଆ ନିଦୁଆ ଲାଗୁଥାଏ । ବଡ଼ ଯୋର୍‌ରେ ଶୋଷ ହେଉଥାଏ । ଖାଇବା ପାଇଁ ଆମେ ବସିଗଲୁଁ । ଝିଅମାନେ ପରଶୁଥାଆନ୍ତି । ମୁଁ ପାଣି ଗ୍ଲାସ୍‌ଟେ ମାଗିଲି । ସେଇଝିଅଟି ସେତିକିବେଳେ ପାଣି ଦେଉଥାଏ । ମୋତେ ଗୋଟାଏ ଗ୍ଲାସ୍ ଧରାଇଦେଲା । ତା'ର ହାତଟି କେମିତି ହଠାତ୍ ଥରି ଉଠିଲା । ହଠାତ୍ ମୋ ଉପରେ ଫୁଲଟେ ଭଳି, ଖସିପଡ଼ିଲା, ସମ୍ପୂର୍ଣ୍ଣ ଚେତା ହରାଇ ।

ଏଭଳି ଏକ ଅବସ୍ଥାରେ ମୋର ମଧ୍ୟ କ'ଣ ହେଲା ଜାଣେନା, ଧୀରେଧୀରେ ସବୁକିଛି ଅନ୍ଧାର ଦେଖାଗଲା—ମୁଁ ମଧ୍ୟ ଅଚେତ୍ ହୋଇ ପଡ଼ିଗଲି ତାରି କୋଳରେ ।"

ଆମ ସମସ୍ତଙ୍କର ଉତ୍‌କଣ୍ଠା ବଢ଼ିଯାଉଥାଏ । ଦେବବ୍ରତ ଗମ୍ଭୀର ହୋଇ-ଯାଉଥାନ୍ତି । ମୋ ସାଥୀରେ ପୁଅଝିଅ ପୁଣି ଏକା ସ୍ୱରରେ ପଚାରିଲେ "ତାପରେ ! ତାପରେ କ'ଣ ହେଲା ।"

ଭଦ୍ରବ୍ୟକ୍ତି ପୁଣି ଆରମ୍ଭ କଲେ "ତାପରେ କ'ଣ ହେଲା ମୁଁ ଜାଣେନା । ଦୀର୍ଘ ଚାରିଦିନ ପରେ ମୋର ଚେତା ଫେରିଲା ବେଳକୁ ଦେଖିଲି, ମୁଁ ଡାକ୍ତର ଖାନାରେ ଆଉ ମୋ ଖଟ ପାଖରେ ଅନ୍ୟଏକ ଖଟରେ ସେଇ ଝିଅଟି । ପାଖରେ ଡ଼ାକ୍ତର ନର୍ସ ଏବଂ ରାୟ ସାହେବ ।"

ରାୟ ସାହେବ ସଦ୍ୟ ଚେତନା ଫେରିଆସୁଥିବା ଝିଅଟିର ହାତଧରି କାନ୍ଦୁ-ଥାଆନ୍ତି ଝିଅଟି ଆଖି ଖୋଲିବା କ୍ଷଣ, ତାର ଦୁଇହାତ ଧରି ଭବ ଗଦ୍‌ଗଦ୍ କଣ୍ଠରେ

କହିଲେ "ମାଆ, ବିଥୀକା; ଏ କଣ କଲୁ ! ମୋତେ କହିଲୁ ନାହିଁ କାହିଁକି ? ମୁଁ କ'ଣ ତୋର ଇଚ୍ଛା ବିରୁଦ୍ଧରେ କିଛି କରିଥାଆନ୍ତି ! ସୁମନ୍ତ ତୋର ପସନ୍ଦ, ଦିହେଁ ଦିହିଁଙ୍କୁ ଭଲପାଅ, ଏତ, ଖୁବ୍ ଭଲକଥା,— ହେଇଦେଖ୍ ସୁମନ୍ତ ଏଇତ,—"

ଏହା କହୁଁ କହୁଁ ମୋ ହାତରେ ଗୁଂଜିଦେଲେ ବିଥୀକାର ହାତ ।

ସମ୍ପୂର୍ଣ୍ଣ ସଂଜ୍ଞା ମୋର ଫେରିଲା କିଛିଦିନ ପରେ । ସେତେବେଳେ ଜାଣିଲି, ଆମେ ଦିହେଁ ମୂର୍ଚ୍ଛିତ ହେବାପରେ ଡ଼ାକ୍ତରମାନେ ପରୀକ୍ଷା କରି କହିଲେ, ଆମେ ବିଷପାନ କରିଛେ, ଏକା ପ୍ରକାରର ବିଷ । ଅବଶ୍ୟ ଆମ ଦିହିଙ୍କୁ ସେ ବିଷୟରେ କିଛି ପ୍ରଶ୍ନ କରାଗଲା ନାହିଁ । ସମ୍ପୂର୍ଣ୍ଣ ସୁସ୍ଥ ହେବାର ଆଗରୁ ଆମର ବିବାହ ହୋଇଗଲା ବେଶ୍ ଧୁମ୍ ଧାମ୍‌ରେ ।

ବିଥୀକା ସହ ବିବାହ ପରେ ମୋର ଜୀବନର ଗତି ବଦଳିଗଲା । ମୋର ଆଶାଠାରୁ ଅନେକ ଅନେକ ବେଶୀ, ପାଇଛି, ବିଥୀକାର ସାହଚର୍ଯ୍ୟରେ ମୋର ବ୍ୟବସାୟ ବଢ଼ିଛି । ଏଯାଏଁ ପଦ୍ମପାଖୁଡ଼ା ଭଳି ମୋର ସମସ୍ତ ହୃଦୟ ସତ୍ତାର କେଶରକୁ କେତେ ଯତ୍ନରେ ଜାବୁଡ଼ି ରଖିଛି ବିଥୀକା । ମୋର ଜୀବନରେ କୌଣସି ଅବଶୋଷ ନାହିଁ । କିନ୍ତୁ ଏଇ ପୂର୍ଣ୍ଣତାର ହେତୁ ଏଇ ମନ୍ଦିର, ଏଇ ଠାକୁର ଏବଂ ଏଇ ନାଗଚଂପା ।

ସେଇଦିନର ନାଗଚଂପା ମୋର ପୁରୁଣା ଚଷମା ଖୋଳରେ ଏଯାଏଁ ସୁରକ୍ଷିତ । ମୁଁ ମନାସିଥିଲି ସେଇ ଠାକୁର ଶିରରୁ ଖସିଥିବା ନାଗଚଂପାକୁ ଠାକୁରଙ୍କୁ ଫେରାଇବି, ସୁବ୍ରତର ନିର୍ବନ୍ଧ ଦିନ । କ୍ଷମାକରିବେ, ଏହାମୋର ବିଶ୍ୱାସର କଥା, ପିଲାଙ୍କ ଉପରେ ଏଇ ନିରୀହ ବିଶ୍ୱାସଟି ଲଦି ଦେବା ମୋର ଉଦ୍ଦେଶ୍ୟ ନୁହେଁ । ମୋର ଆତ୍ମସନ୍ତୋଷ ପାଇଁ ଗୋଟାଏ ଉପଚାର ।"

ସମସ୍ତେ ଗମ୍ଭୀର ହୋଇଗଲେ କିଛିକ୍ଷଣ । ମନ୍ଦିର ଭିତରେ ଭଦ୍ରବ୍ୟକ୍ତିଙ୍କର ସ୍ତ୍ରୀ ଏଯାଏଁ ପୂଜାରୀ ସହ ବସିଥିଲେ । ଭଦ୍ରବ୍ୟକ୍ତି ପୁରୁଣା ପିତଳର ଚଷମା ଖୋଳଟାଏ କାଢ଼ି ଚଉତରାକୁ ଆସି ସଦ୍ୟ ତୋଳା ନାଗଚଂପା ପାଖରେ ତାକୁ

ଖୋଲିବାକୁ ଉଦ୍ୟତ ହେଲକ୍ଷଣି, ଏ ଯାଏଁ ସଂପୂର୍ଣ୍ଣ ଗମ୍ଭୀର ଥିବା ଦେବବ୍ରତ ଚିତ୍କାର କଲେ, "ଖୋଲନ୍ତୁନାହିଁ, ଆଉ ତାକୁ ଖୋଲନ୍ତୁନାହିଁ, ବିଶ୍ୱାସକୁ ବେଶୀ ଖୋଳତାଡ଼ କରିବା ଉଚିତ୍ ନୁହେଁ । ଏ ଫେଥ୍ ଇଜ୍ ନେଭର୍ ଆକ୍ୱାର୍ଡ୍ ବାଇ ରିଜିନ୍ । କୋଏସ୍ଲର୍‌ଙ୍କର ଏହି ମହାବାଣୀ । ବରଂ ମୋତେ ଦିଅନ୍ତୁ ଅବିଶ୍ୱାସୀ ଲୋକ ମୁଁ । ମୁଁ ଜାଣେ ଆପଣଙ୍କର ବିଶ୍ୱାସ ଏ ସବୁ ଈଶ୍ୱର କୃପା ଯୋଗୁଁ ସମ୍ଭବହେଲା, କିନ୍ତୁ ମୋତେ ଜଣା ଏ ସବୁ ନାଟକ ପଛରେ ଅଛି, ଗୋଟାଏ ସଇତାନ୍—" ।

ଉତ୍ତେଜିତ ଦେବବ୍ରତଙ୍କୁ ମୁଁ କହିଲି "ଏ କ'ଣ କହୁଛନ୍ତି, ଏଇଠି ସଇତାନ୍ କିଏ ?"

ଦେବବ୍ରତ, ଖୋଳଟି ନେଇ ଅତି ସତର୍କରେ, ଆମ ସମସ୍ତଙ୍କର ସମ୍ମୁଖରେ ଖୋଲି ଭିତରର କଳା କଳା ସାଗଂଶକୁ ସିମେଣ୍ଟ୍ ଚଟାଣରେ ଢ଼ାଳିଦେଲେ । ଆମେମାନେ ସମସ୍ତେ ପାଖକୁ ନଇଁ ଦେଖିବାକୁ ଚାହିଁଲୁ । ସେ ଚିତ୍କାର କରି କହିଲେ "ନା, ସୁମନ୍ତବାବୁ—ଦୀର୍ଘ ତିରିଶ ବର୍ଷପରେ ମଧ୍ୟ ସଇତାନ୍ ଜିବୀତ । ତାର ନିକଟତର ହେଲେ ଆଉ ଅଧିକ ଭୌତିକ ହିତ ସମ୍ଭବ ହୋଇନପାରେ ।"

ଏହା କହି ସେ ଦୀର୍ଘଏକ ସରୁ ବାଡ଼ିରେ ପେଡ଼ିରେ କଳା ପଡ଼ିଯାଇଥିବା ପାଖୁଡାକୁ ଓଲଟ ପାଲଟ କଲେ । ହଠାତ୍ ସେ ମଧ୍ୟରୁ ସରୁ ସୁତା ଭଳି ଏକ ସର୍ପଟିଏ ଟିକି ଫେଣାଟେକି, ସିମେଣ୍ଟରେ ଡେଇଁବାକୁ ଲାଗିଲା । ଏବଂ ସମସ୍ତେ ଚିତ୍କାର କଲେ "ସାପ, ସାପ ସାପ, ।"

ଚିତ୍କାର ଶୁଣି ପୂଜାରୀ ଏବଂ ବିଥୀକାଦେବୀ ମନ୍ଦିର ଭିତରୁ ବାହାରି ଆସିଲେ । ମନ୍ଦିର ମୁଖଶାଳାରେ ଓଢ଼ଣା ଟେକି, ନାଗଚଂପା ଛାଇରେ, ଦଣ୍ଡାୟମାନ ଦେବବ୍ରତଙ୍କୁ ଦେଖି ବିଥୀକା ଦେବୀ ଆଉଥରେ ଚମକିପଡ଼ି କହିଲେ "ଆପଣ ! ।"

ଦେବବ୍ରତ କିଛୁ ନିରୁତ୍ତର, ସାପଟିକୁ ବାଡ଼ିରେ କେଂଚି ତାକୁ ସତର୍କରେ ନେଇଗଲେ ପାହାଡ଼ ଦିଗରେ । ପାହାଡ ଉପରୁ ସାପଟିକୁ ଫୋପାଡ଼ି ଦେଇ

ଦେବବ୍ରତ ଖୁବ୍ ଜୋର୍‌ରେ ପାହୁଣ୍ଡ ପକାଇ ଆଗଉଥିଲେ ଗଳଗଣ୍ଡାରେ–ଆପଣା ଘର ଆଡ଼କୁ । ଭଦ୍ରବ୍ୟକ୍ତିଙ୍କ ଝିଅ ମୋତେ କହୁଥାଏ "ମଉସା ଏଇ ପ୍ରକାର ସାପ ନାଗଚଂପା ଭଳି ଟ୍ରପିକାଲ୍ ଫୁଲଦିହରେ ହାଇବର୍‌ନେଟ୍ କରନ୍ତି । କିନ୍ତୁ ସେ ମଉସା'ତ ଅନ୍ନ ନପାଇ ସେଆଡ଼େ ଗଲେଣି । ତାଙ୍କୁ ଡ଼ାକ ମଉସା ।"

ମୁଁ ଉତ୍ତର ଦେଲି "ନା ମାଆ, ସେବି ଗୋଟାଏ ପ୍ରକାର ଅନନ୍ତ ସୁଷୁପ୍ତିରେ ଗ୍ଲିଛି, ତାହାର ହାଇବର୍‌ନେସନ୍ ଶେଷ କରିବା ଆମର ଠିକ୍ ହେବ ନାହିଁ ।"



( ଚେରେ ବାହାଲର ଗୃହାଲର ଉତ୍ତରାର୍ଦ୍ଧ )

ମୋ ସ୍ତ୍ରୀ ବିଥୀକା ଲାଇବ୍ରେରୀ ଥାକ ସଜାଡୁଥିଲେ । ମୁଁ ନିକଟରେ ବସି ପ୍ରାଚୀନ ସାହିତ୍ୟରେ ପକ୍ଷୀକଥା ନାମରେ ଖଣ୍ଡେ ପୁସ୍ତକର ଶେଷ ପରିଚ୍ଛେଦ ଲେଖୁଥିଲି । ସଦାକାଳେ ସାରସ୍ୱତ ଚେତନା ସହ ପକ୍ଷୀ କଥାର ପ୍ରାସଙ୍ଗିକତା ମୋତେ ମୁଗ୍ଧକରେ । ପ୍ରାଣସତ୍ତାର ବିବର୍ତ୍ତନରେ ସରୀସୃପ ଓ ମାନବ ମଧ୍ୟରେ ବିହଙ୍ଗ ଏକ ମଧ୍ୟବର୍ତ୍ତୀ ସ୍ୱରୂପ ବୋଲି ସ୍ୱୀକୃତ ହେଲେହେଁ ସାହିତ୍ୟିକ ପରମ୍ପରାରେ ପକ୍ଷୀ ମାନବୋତ୍ତର ଦିବ୍ୟ ସ୍ୱରୂପ ଭବେ ପ୍ରାଣୀର ପରମ ପରାକାଷ୍ଠାର ପ୍ରତୀକ ।

ପୁସ୍ତକଟିରେ ବେଦ ଉପନିଷଦ ପୁରାଣ ତଥା ମଧ୍ୟଯୁଗର ସାହିତ୍ୟରେ ବିହଙ୍ଗ କିଭଳି ବିଭିନ୍ନ ସମୟରେ ସାରସ୍ୱତ ଚେତନାର ପ୍ରଥମ ପ୍ରେରଣା ହୋଇ ଆସିଛି ତାହାହିଁ ବୟାନ୍ ହୋଇଛି । ହଠାତ୍ ବିଥୀକାଙ୍କ ହାତର ପୁରୁଣା ବହିରୁ ଖସି ପଡ଼ିଲା ଶ୍ୱେତ ସୁନ୍ଦର ପକ୍ଷୀ ପରଟିଏ ।

ପରଟିକୁ ଚଞ୍ଚୁ ଉଠାଇ, ଲାଇବ୍ରେରୀର ଅନ୍ୟ ଥାକ ମାନଙ୍କର ବହିରେ ଲାଗିଥିବା ଅଳନ୍ଧୁକୁ ସେଇ ପରରେ ଝାଡ଼ିବା ବେଳେ, ବିଥୀକାଙ୍କୁ କହିଲି "ବିଥୀକା ମୋର ସ୍ୱଉପାର୍ଜ୍ଜିତ ସମ୍ପତ୍ତିର ଅର୍ଦ୍ଧେକ ବ୍ୟୟ କରିଛି ଏହି ପୁସ୍ତକ କ୍ରୟରେ......

ମୋର କଥା ସରିନି, ହଠାତ୍ ପରସ୍ପରରେ ପୁସ୍ତକ ଗୁଡ଼ିକ ଯେମିତି ସଚଳ ହୋଇ ଉଠିଲେ । ଆଖି ପିଛୁଳାକେ ଅର୍ଦ୍ଧାଧିକ ପୁସ୍ତକ ଅନ୍ତର୍ଧାନ ହୋଇଗଲେ ଏବଂ ଥାକ ଥାକ ବହି ପରସ୍ପର କଗଡ଼ି ହୋଇ ପଡ଼ିଲେ ।

ଏମିତି ଏକ ଅଦ୍ଭୂତ ଭୌତିକ କାଣ୍ଡ ଦେଖି ବିଥୀକା, ହଠାତ୍ ଚିତ୍କାର କରି ତଳେ କଗଡ଼ିପଡ଼ିଲେ ଏବଂ ମୋର ପୁଅଝିଅ ସମସ୍ତେ ଦଉଡ଼ି ଆସିଲେ । ପଡୋଶୀ ଘରେ ଡ଼ାକ୍ତର ବାବୁ ରହନ୍ତି, ତାଙ୍କୁ ଡ଼ାକିଆଣିବା ବେଳକୁ ମୁଁ କିଛି ଜଳ ସିଂଚି ଚେତା ଫେରାଇ ଆଣିଥିଲି । କିନ୍ତୁ ମୋତେ ଲକ୍ଷ୍ୟକରି ସେ କହୁଥିଲେ "କବି ହେବ ବୋଲି, ରାତିସାରା ଜନ୍ଦ୍ରକୁ ଗୁହିଁ ରହୁଛ, ମୋତେ ସାଙ୍ଗ ସାଥୀ କହୁଥିଲେ ମୁଁ ବିଶ୍ୱାସ କରୁନଥିଲି, ତୁମ ଦିହରେ ଭୂତ ସବାର ହେଲେ ତମେ

ଗପଲେଖ, ମୁଁ ବାପା ମାଆଙ୍କର ଗୋଟାଏ ବୋଲି ଜାଣିଛ, ମୋତେ ତମେ ବାପଘରେ ଛାଡ଼ିଦିଅ, ଏଇ ଆଖିରେ ଦେଖିଲି, ପର ଛୁଆଁ ଅଧାରୁ ଅଧିକ ବହି ଶୂନ୍ୟରେ ଉଡ଼ାଇ ନେଲ । ମୋ ପୁଅଝିଅଙ୍କର ଗଣ, ଏଇ କବି ହେବାର ନିଶାଛାଡ଼, ମୋ ସଂସାର ବୁଡ଼ାଅ ନାହିଁ ।"

ମୁଁ ମୋର ବହିଥାକ ଏବଂ ବିଥୀକା ଦିହିକୁ ଅନାଇ ରହିଲି । ଭଲକରି ବହିଥାକ ସଜାଡ଼ି ମୋର କେଉଁ ବହି ମାନ ଉଭେଇ ଗଲେ ତା'ର ତାଲିକା କରି ସ୍ତମ୍ଭିତ ହୋଇଗଲି । ଯେଉଁ ବହିମାନ ମୁଁ ସାଙ୍ଗ ସାଥୀ ମାନଙ୍କଠାରୁ ମାଗିଆଣି, ଫେରାଇ ନାହିଁ, ବା ଲାଇବ୍ରେରୀ ମାନଙ୍କରୁ ଚୋରି କରି ଆପଣାର କରିଥିଲି ସେହି ବହି ମାନହିଁ ଉଭେଇ ଯାଇଛନ୍ତି । ଭାଗ୍ୟ ଭଲ, ସବୁଥାକରେ ପରଟିକୁ ଛୁଆଁଇ ନାହିଁ, ନହେଲେ, ସେଥିରୁ ମଧ୍ୟ ଅସତ୍ ଉପାର୍ଜିତ ସବୁପୋଥୀ ଉଡ଼ିଯାଇ ଥାଆନ୍ତା ।

ମୋର ମନେ ହେଲା ସବୁସେଇ ପକ୍ଷୀପରର ମାହାତ୍ମ୍ୟ । ତାକୁ ଅତି ସନ୍ତର୍ପଣରେ ଗୋଟାଏ ଚଷମା ଖୋଳରେ ବନ୍ଦକରି ରଖିଦେଲି, ଡାକ୍ତରବାବୁଙ୍କର ତଥା ସ୍ତ୍ରୀଙ୍କର ଅଭିଯୋଗ ଓ ପ୍ରଶ୍ନ ମାନଙ୍କର ସାମ୍ନାକଲି ।

ଜାଣିଲି ସେଇ ପରଟି ସତ ପରଖା ପର । ତାହାର ସ୍ପର୍ଶରେ କୌଣସି ଅସତ୍ୟ ଲୁଚିରହିପାରିବ ନାହିଁ । ପରଟିକୁ ସିନା ଲୁଚାଇ ଦେଲି, ସତ୍ୟଟି ଗୋପନ ରହିବା ସ୍ୱଭାବ ବିରୁଦ୍ଧ । ଅସତ୍ୟ ଯେତେ ପ୍ରଭାବଶାଳୀ ହେଲେହେଁ ସତ୍ୟକୁ ପରାହତ କରିବା ସମ୍ଭବ ନୁହେଁ । ଅସତ୍ୟର ଜାଗତିକ ତମିସ୍ରା ଭେଦକରି ସତ୍ୟ ତାର ଚିରନ୍ତନ ବିଜୟ ଘୋଷଣା କରେ । ତାମସିକତା ସାମୟିକ ମାତ୍ର । ସେହି ସତ୍ୟର ଅଙ୍ଗେନିଭା କାହାଣୀ ହିଁ ଏହି ପରକଥା ।

ଜଣେ ସୁଖ୍ୟାତ ପ୍ରତିଷ୍ଠିତ ସାହିତ୍ୟିକ ମୋ ଘରକୁ କେବେ କେମିତି ଆସନ୍ତି । ସେ ରାଜ୍ୟ ସ୍ତରରେ, ଜାତୀୟ ସ୍ତରରେ ଏଭଳିକି ଆନ୍ତର୍ଜାତୀୟ ସ୍ତରରେ, ଅନେକ ମହାର୍ଘ୍ୟ ପୁରସ୍କାର ବିଜେତା । କଥା କଥାକେ ମହାଶୟ ତାଙ୍କର ଏକାଡେମୀ ତଥା ଜ୍ଞାନପିଠ ପୁରସ୍କାର ପ୍ରାପ୍ତ ପୁସ୍ତକ ମାନଙ୍କର ଅନନ୍ୟତା ବିଷୟରେ କହନ୍ତି, ତେଣୁ, ସଭା ସମିତିରେ ତାଙ୍କନାମ ବକ୍ତା ମାନଙ୍କ ମଧ୍ୟରେ ଥିଲେ ଶ୍ରୋତା ସଂଖ୍ୟା କେଭେହେଁ ଦଶଅଂକକୁ ଆସିପାରେନା । ମୋ ଭଳି, ସାମାନ୍ୟ କଥାକାର ଘରକୁ

ଆସିବା ହେତୁ ହେଉଛି, ମୁଁ ତାଙ୍କର ଜଣେ ବାଧ୍ୟ ଛାତ୍ର । ଏଥର ସେ ଉଚ୍ଚାଙ୍ଗ ସାହିତ୍ୟ ବିଷୟରେ କହୁ କହୁ କହିଲେ ଯେ, ବିସ୍ମୟଭାବ, ବା ରହସ୍ୟ ସାହିତ୍ୟର ଚମତ୍କାରିତା ପାଇଁ ଅପରିହାର୍ଯ୍ୟ କିନ୍ତୁ ବିବର୍ତ୍ତନର ତାଡ଼ନାରେ ବିଶେଷତଃ, ଆଧୁନିକ ବିଜ୍ଞାନର ପ୍ରଭାବରେ ମଣିଷ ପାଇଁ ଆଶ୍ଚର୍ଯ୍ୟ ଜନକ ବୋଲି କିଛିନାହିଁ । ତେଣୁ ସାହିତ୍ୟ ମାତ୍ରେ ନିରସ ହୋଇ ଯାଉଛି ।

ମୁଁ ଚୁପ୍ ହୋଇ ସବୁଦିନ ଶୁଣେ । ସେଦିନ କିନ୍ତୁ କହିଲି ! ମହାଶୟ ! ମୋତେ ତ ସମଗ୍ର ବିଶ୍ୱର ପ୍ରତିଟି କଥା ବିସ୍ମୟକର ଏବଂ ଆଶ୍ଚର୍ଯ୍ୟଜନକ ମନେହୁଏ । ବଡ଼ ଆଶ୍ଚର୍ଯ୍ୟର କଥା, ଏତେ ଆଶ୍ଚର୍ଯ୍ୟ ଜନକ ଉପାଦାନ ସତ୍ତ୍ୱେ ମଣିଷ ମାନେ କେମିତି ଆଶ୍ଚର୍ଯ୍ୟ ହେଉ ନାହାନ୍ତି । ବିସ୍ମିତ ହେବା ପାଇଁ ଯେଉଁ ସିଂଗ୍ଧର ବୁଦ୍ଧି ଟିକକ ଆବଶ୍ୟକ ସେତିକି ମଧ୍ୟ ଆଧୁନିକ ମଣିଷ ହରଇ ବସିଛି । କିମାଶ୍ଚର୍ଯ୍ୟଂ ? ଯେତେ ମୂର୍ଖ ନିପଟ ଓଲୁ ହେଉନା କାହିଁକି, ପରଟିଏ ବାଜିଲେ ପୁସ୍ତକଟି ଅନ୍ତର୍ଦ୍ଧାନ ହୋଇଗଲେ ଆଶ୍ଚର୍ଯ୍ୟ ନହୋଇ ରହିବ କିଏ ? ”

ସେ ପ୍ରଶ୍ନକଲେ–ପର ଆଉ ପୁସ୍ତକ କଥା ବୁଝିହେଲନାହିଁ ।

ମୁଁ ସଂକ୍ଷେପରେ ଲିଖା ଶବର 'କାହାଣୀ ଏବଂ ସେଇ ପକ୍ଷୀ ପରର ଯାଦୁକରୀ ଶକ୍ତି କଥା କହିଲି । ସବୁ ଶୁଣି, ସେ କହିଲେ "ଆଗରୁ ଭାବୁଥିଲି, ତମେ ସଂପୂର୍ଣ୍ଣ......, ହଉ ସେଇ ପରଟି ମୋତେ ଦେଲ ମୁଁ ଟିକେ ପରଖିବି ତାର ମାହାତ୍ମ୍ୟ ।"

ମୁଁ ବିନାଯୁକ୍ତିରେ ତତକ୍ଷଣାତ୍ ପରଟିକୁ ଖୋଳରୁ ବାହାର କରି ତାଙ୍କୁ ଦେଇ ଦେଲି । ପକ୍ଷୀପରଟି ଧରି ପ୍ରଜ୍ଞାପୀଠ ପୁରସ୍କାର ବିଜେତା-ମୋ ଘରୁ ସଙ୍ଗେ ସଙ୍ଗେ ଗ୍ଲିଗଲେ । ଠିକ୍ ଆରଦିନ ସକାଳରେ ମୋର କବାଟରେ ଠକ୍ ଠକ୍ କରି ସାହିତ୍ୟିକ ମହାଶୟ ମୋତେ ବିକଳରେ ଡ଼ାକୁଥିଲେ "ହେ କୁମାର, କବାଟ ଖୋଲ ବାବା, କବାଟ ଖୋଲ, ମୋର ସଂସାର ସରିଗଲା ।"

ମୁଁ କବାଟ ଖୋଲିଲି ଯେମିତି ଝାଡନାଳ କବି, ଗୋଟାଏ ବିରଟ ପୁସ୍ତକ ମୋ ହାତକୁ ବିକଳରେ ବଢାଇ ଦେଇ କହିଲେ "କୁମାର, ସଇତାନ୍ ପରକୁ ମୁଁ

ସେଇ ପୁସ୍ତକରେ ନୁଗୁଇ ରଖିଛି, ତାକୁ ତୁମେ ରଖ, ମୋର ସର୍ବନାଶ କଲଣି ଏଇ କେଇ ଘଣ୍ଟାରେ" ।

ମୋର ପ୍ରଶ୍ନକୁ ଅପେକ୍ଷା ନକରି ସେ କହି ଗ୍ଲଲେ ତାଙ୍କର ଦୁର୍ଦ୍ଦଶାର କାହାଣୀ ।

"ପରଟିକୁ ନେଇ ଘରକୁ ଗଲି । ମୋର ଡ୍ରଇଁଗ୍ରୁମ୍‌ରେ ଟଙ୍ଗା ହୋଇଥିବା ଏକାଡ଼େମୀ ଓ ପ୍ରଜ୍ଞାପୀଠର ତାମ୍ରଫଳକ ପାଖରେ ପରଟିକୁ ଖଂଜିଦେଇ, ମୋ ସ୍ତ୍ରୀଙ୍କୁ ତୁମର ପର ପାଗଳାମୀ କଥା କହୁଥିଲି । ମୋ ସ୍ତ୍ରୀ ପ୍ରଥମେ ଗଙ୍କ୍ୟ-ଏକାଡ଼େମୀ ଫଳକକୁ ଦେଖି ଚମକି ପଡ଼ି କହିଲେ, "ଦେଖିଲ ! ଫଳକଟିରେ ଭୁଲ୍ ଲେଖା ହେଇଛି କିମିତି ?"

ମୁଁ ପରଟି ସହ ସବୁ ଏକାଡେମୀର ପ୍ରଜ୍ଞାପୀଠ ଫଳକ ଆଣି ପଢ଼ିଲି । ଓଡ଼ିଆ ତାମ୍ରଫଳକ ଟିରେ ଲେଖା ହୋଇଛି "ସାହିତ୍ୟ ଏକଦମ ତିରସ୍କାର" ଜାତୀୟ ସ୍ତରରେ ପ୍ରାପ୍ତ ତାମ୍ରଫଳକର ଇଂରଜୀ ଲେଖାର ନସନାଲ୍ ଏଓ୍ୱାଡ଼୍, ଟି ମାତ୍ର 'A' ବଦଳରେ 'C' ବର୍ଣ୍ଣର ଖଞ୍ଜାହୋଇ ଯାଇଛି, ନସନାଲ୍ କାଓ୍ୱାଡ଼୍ ।

ବଦମାସ୍ ପରଟି ସବୁଠୁଁ ବେଶୀ କ୍ଷତି ସାଧନ କରିଛି ପ୍ରଜ୍ଞାପୀଠ ପ୍ରମାଣ ଫଳକର । ଫଳକଟି ଗଷ୍ଟପତିଙ୍କ ହାତରୁ ମିଳିଥିଲ । ଫଳକକୁ ଅନେକଥର ଆଗରୁ ପଢ଼ିଛି । ଲେଖା ଥିଲ ।

" ଇନ୍ଦ୍ରପଦ ସିଂହରାଏ ଫର୍‌ହିଜ୍ ୟୁନିକ୍ କଣ୍ଟ୍ରିବ୍ୟୁସନ୍ ଟୁ ଲିଟରେଚର୍ ବାଏ ପଲ୍‌ସେଟିଂ ଥିମେଟିକ୍ ରିଭୋଲ୍ୟୁସନ୍, ପୋଏଟିକ୍ ପାର୍ ଏକ୍‌ସେଲେନ୍‌ସ, ପ୍ରଫାଉଣ୍ଡ୍ ପେନେଜିରିଜ୍‌ମ୍, ଆଷ୍ଟାଉଣ୍ଡିଂ ସିଭିଲାଇଜିଂ କଣ୍ଟେଣ୍ଟ୍, ଅବ୍‌ସୋଲ୍ୟୁଟ୍ ପରଫେକ୍‌ସନ୍ ଇନ୍ ପ୍ରୋଜ୍ ଡ଼ିଜର୍ଭ୍‌ସ୍ ଦିସ୍ ହାଏସ୍‌ଟ ରିକୋମେଣ୍ଡେସନ୍ । ହି ଗେଟ୍‌ସ ଏନି ଏଓ୍ୱାଡ୍ ବାଏ ସିଅର୍ ମୋନୁମେଣ୍ଟାଲ୍ ପର୍‌ସିଭରେନ୍‌ସ୍ ଏଣ୍ଡ୍ ଜେନିୟସ୍"

ପରସ୍ପର୍ଶରେ ତାମ୍ରଫଳକ ପରିବର୍ତ୍ତିତ ହୋଇଛି "ଇନ୍ଦ୍ରପଦ ସିଂହରାୟ ଫର୍‌ହିଜ୍ ୟୁନକ୍ ସବ୍‌ସ୍‌ଟିଚ୍ୟୁସନ୍ ଅଫ୍ ଲିଟରେଚର୍ ବାଏ ପଲ୍ୟୁଟିଂ ଥିମେଟିକ୍ ଡ଼ିଭେଲ୍ୟୁସନ୍, ପାଥେଟିକ୍ ପୁର୍ ଏକ୍‌ସେଲେନ୍‌ସ, ପ୍ରିଫାଉଣ୍ଡିଂ ପ୍ଲାଗିଆରିଜ୍‌ମ୍,

ଅଲ୍ ଗଉଣ୍ଡ୍ ଇଭିଲ୍ଜିଙ୍ଗ୍ କଣ୍ଟେଣ୍ଟ୍, ଅବ୍ସୋଲେଟ୍ ପର୍ଭର୍ସନ୍ ଇନ୍ ପ୍ରୋଜ୍, ଡ଼ିଜର୍ଭସ୍ ଦିସ୍ ହାଏସ୍ଟ କଣ୍ଡେମନେସନ୍ । ହି ଗେଟ୍ସ୍ ଦି ଏଓ୍ୱାର୍ଡ ବାଏ ସିଥର୍ ମନିଟାରି ମାନ୍ୟୁପୁଲେସନ୍"

ଏଥର ସତରେ ସେ କାନ୍ଦୁଥିଲେ । "କୁମାର୍ । ବଦ୍ମାସ୍ ପର, ମୋର ମହାର୍ଘ ପାଣ୍ଡୁଲିପି ମାନଙ୍କର ମଧ୍ୟ ଅପୂରଣୀୟ କ୍ଷତି କରି ସାରିଛି । ପରଟିରେ ପାଣ୍ଡୁଲିପିକୁ ଛୁଆଇଁ ଦେଇଥିଲି । ଗତ ସନ୍ଧ୍ୟାରେ ପ୍ରକାଶକ ନେଇଯାଇଥିଲେ । ଗତିରେ ତହିଁରୁ କିଛି ଅଂଶ ପାଠକରି ପ୍ରକାଶକ ପାଣ୍ଡୁଲିପିକୁ ମୋ ସମ୍ମୁଖରେ ଫୋପାଡ଼ି ଦେଇ ଚାଲିଗଲେ । ପାଣ୍ଡୁଲିପି ପୁଣିଥରେ ପଢ଼ିଲି । ଉପନ୍ୟାସର ସାର– ତତ୍ୱ ସଂପୂର୍ଣ୍ଣ ଓଲଟି ଯାଇଛି । ପ୍ରସିଦ୍ଧ ଲେଖକ ମାନଙ୍କର ଅସଲ ଚେତନାକୁ ମୋ ଭଷାରେ ପ୍ରକାଶ କରିଥିବା ଅଂଶମାନ ସମ୍ପୂର୍ଣ୍ଣ ଲୋପ ପାଇଯାଇଛି । ମୋର ସମ୍ପୂର୍ଣ୍ଣ ନିଜସ୍ୱ ଚିନ୍ତା ସବୁ ସୁରକ୍ଷିତ, କିନ୍ତୁ ପଢିଲେ ମନେହେବ ପୁସ୍ତକଟି ଜଣେ ପ୍ରଚଣ୍ଡ ମୂର୍ଖର ଆତ୍ମ ପରିଚୟ ମାତ୍ର ।

ଏତିକ କହି ମହାଶୟ, ଆପଣା ପ୍ରଜ୍ଞାପୀଠ ପୁରସ୍କାର ପ୍ରାପ୍ତ ପୁସ୍ତକରେ ପରଟିକୁ ସତର୍କରେ ମୋତେ ବଢାଇ ଦେଇ ବଡ଼ ବିକଳରେ ମୁହଁପୋଛି, ବିଦାୟ ନେଲେ । ତାଙ୍କର ପ୍ରଜ୍ଞାପୀଠ ପୁରସ୍କାର ପ୍ରାପ୍ତ ପୁସ୍ତକ ମଧ୍ୟରୁ ପରଟିକୁ କାଢ଼ି ପୁନର୍ବାର ଚଷମା ଖୋଳରେ ଭର୍ତ୍ତି କରିବା ଆଗରୁ ପୁସ୍ତକଟିର କେଇ ପୃଷ୍ଠା ପଢ଼ିଲି । ଆଶ୍ଚର୍ଯ୍ୟ ! ପୁସ୍ତକର ଦୁଇ ତୃତୀୟାଂଶ ବର୍ଣ୍ଣ ବିଲୁପ୍ତ । ଆଉ ଯାହାଅଛି ତାହା ପଢିଲେ ଯେ କେହି ଭବିବ, ଜଣେ ବାଉଳ କ'ଣ ଗୁଡ଼ାଏ ବାଜେକଥା ଲେଖିଛି ।

ସାହିତ୍ୟରେ ସତ୍ୟ କ'ଣ ଅସତ୍ୟ କ'ଣ ଜାଣିନି । ସତ୍ୟପରଖା ପର କିନ୍ତୁ ସନାତନୀୟ । ଅନ୍ୟର ଚିନ୍ତା ବା ଚେତନାକୁ ଆପଣେଇବାର ପ୍ରବଞ୍ଚକ ଆଧୁନିକ ଲେଖକ ମାନଙ୍କୁ ଅଧିକ ଅପଦସ୍ଥ ନକରିବା ପାଇଁ ଏଥର ପ୍ରତିଜ୍ଞାକଲି ପରଟି ଚଷମା ଖୋଳରୁ ମୋଟେ କାଢ଼ିବି ନାହିଁ ।

କିନ୍ତୁ ସତ୍ୟର ଧର୍ମ ଲୁଚି ରହେନା । ମୋ ପଡ଼ୋଶୀ ଜଣେ ପୂର୍ବତନ ମନ୍ତ୍ରୀ ଥିବାବେଳେ, ଏ ନିରୀହ କଥାକାର ତାଙ୍କୁ ଚେଷ୍ଟାକରି ମଧ୍ୟ ଥରୁଟିଏ

ସାକ୍ଷାତ କରିପାରିନଥିଲ । ଏବେ ନିର୍ବାଚନରେ ଅକସ୍ମାତ୍ ପରାଜୟପରେ, ହଠାତ୍ ତାଙ୍କର ପ୍ରାସାଦର ଗହଳି ଗ୍ଲିଯାଇଛି । ଦିନକୁ ଦଶ ବାରଟି ସଭରେ ବକ୍ତୃତା ଦେବାରେ ଅଭ୍ୟସ୍ତ ମନ୍ତ୍ରୀ ଏବେ ଏହି କଥାକାର ପାଖକୁ ନିଜେ ଆସିଯାଆନ୍ତି । ଅଧୁନା ରାଜନୀତିରେ ପ୍ରବଞ୍ଚନା କେମିତି ପ୍ରବଳ ହେଲଣି, ଏବଂ ସେ ନିମିତ୍ତ, ରାଜନୀତିରେ ଆଉଜଣେ ସତ୍ୟନିଷ୍ଠ ମହାତ୍ମାଙ୍କର ଆବିର୍ଭାବର ସମ୍ଭାବନା ବିଷୟରେ ଗୀତାର "ଯଦାଯଦାହି ଧର୍ମସ୍ୟ" ଶ୍ଲୋକ ଆବୃତ୍ତି କରି ମୋତେ ଶୁଣାନ୍ତି ।

ଅସତର୍କ ମୁହୂର୍ତ୍ତରେ ମୁଁ ସତ୍ୟାସତ୍ୟ ନିର୍ଣ୍ଣୟ ପାଇଁ କିଭଳି ଗୋଟାଏ ସାମାନ୍ୟ ପର ସହାୟକ ହୋଇପାରେ କହିପକାଇଲି । ମନ୍ତ୍ରୀ ମହାଶୟ, ମନ୍ତ୍ରୀତ୍ୱ ଆଗରୁ ସାମାନ୍ୟ ମାଷ୍ଟରଙ୍କ ପୁଅ ଭବରେ ଗ୍କିରୀ ପାଇଁ ଚେଷ୍ଟା କରିଥିଲେ । ପ୍ରବଳ କପିସତ୍ତ୍ୱେ ମେଟ୍ରିକ୍ ପାସ୍ କରି ପାରିଲେ ନାହିଁ । ତାପରେ କଚେରୀ ବାଜଣ୍ଡାରେ ବସି ଟାଉଟରୀରେ ନାମଲେଖାଇଲେ । ଦେଶୀ ମଦ ଠିକା ଦେବା ନେବାରେ ଆପଣାର ପାରିବାପଣିଆରେ, ବେକାରୀ ଯୁବକ ମାନଙ୍କର ଗୋଟାଏ ଗୁଣ୍ଡାଦଳ ଗଠନ କରି, ଦୁର୍ନୀତି ନିବାରଣ ମଂଚ ଟେ ସ୍ଥାପନ କଲେ । କ୍ରମେକ୍ରମେ ସାଧାରଣ ଅପରାଧୀ ମାନଙ୍କୁ ସହାୟ ହେଇଁ ହେଉଁ, ଦୁଇତିନୋଟି ନାରୀଧର୍ଷଣ, ଓ ହତ୍ୟାରେ ସଂପୃକ୍ତ ହେବାକ୍ଷଣି, ସେ ବିଧାନ ସଭକୁ ଯିବାର ପଥ ସୁଗମ କରିଦେଲେ । କପିଧରିଥିବା ପ୍ରଧାନ ଶିକ୍ଷକଙ୍କୁ ଥରେ ବିଚ୍ ବଜାରରେ ଚପଲରେ ସେକିଦେବା ପରେ, ବିଚରା ଶିକ୍ଷକ ତାଙ୍କୁ କହିଥିଲେ "ବାବୁରେ, ମୋତେ ଯିଏ ହାତରେ ବାଡେଇଥିଲେ ଏବେ ଜନପ୍ରତିନିଧି ହେଲେଣି, ତୁ ମୋତେ ଜୋତାରେ ବାଡ଼େଇଲୁ, ନିଶ୍ଚୟ ମନ୍ତ୍ରୀହେବୁ, ମୁଁ ତୋପାଇଁ ଗର୍ବିତ, ମୁଁ ତୋତେ ଆଶୀର୍ବାଦ କରୁଛି" । ସତକୁ ସତ ମହାଶୟ ସେହି ବର୍ଷହିଁ ଶିକ୍ଷାମନ୍ତ୍ରୀ ବନିଯାଇଥିଲେ । ଯୁଗ ସଂକେତର ଏହି ପ୍ରାମାଣିତ ତଥ୍ୟ ସର୍ବଜନ ବିଦିତ । ମହାଶୟ ମୋର ପକ୍ଷୀପର କାହାଣୀ ଶୁଣି, ଅନ୍ୟମାନଙ୍କଭଳି ମୋତେ ସଂପୂର୍ଣ୍ଣ ବାଗ୍ଳ ବୋଲି ଭବିବା ସ୍ୱାଭବିକ । ଏଥର କିନ୍ତୁ ମୁଁ ସତର୍କରେ ପରଟିକୁ ଦୂରରୁ ଖୋଲି ଦେଖାଇଲି । ମହାଶୟ ପରଟିକୁ ଟାଣିନେଇ, ଆପଣା ହାତରେ ପରଖି, ମୁହଁରେ ଘସି ହେଇଁ ହେଉଁ କହିଲେ " କୁମାଭ, ଏଇ ସାମାନ୍ୟ ପରଟା ତମକୁ ପାଗଳ କରିଛି" ।

କିନ୍ତୁ ହାୟ, ଏହା କହିବାବେଳକୁ ତାଙ୍କର ମୁଖମଣ୍ଡଳ ଏବଂ ହାତ ପାପୁଲି ମାନଙ୍କରେ ଅଦ୍‌ଭୂତ ପରିବର୍ତ୍ତନ ଘଟି ସାରିଥିଲା । ହାତରୁ ଉପର ଚମସବୁ ଉଭେଇ ଯାଇ ଖାଲି ଥିଲା ହାଡ ଏବଂ ମୁହଁର ନାକ ଓ ଗାଲ ଉଭେଇ ଯାଇ, କେବଳ କଙ୍କାଳ ହିଁ ଦେଖା ଯାଉଥିଲା । ହଠାତ୍ ସେ ବିଚିତ୍ର ଏକ ଚିତ୍କାର କରି ମୋର ଗୋଡ଼ତଳେ ପଡ଼ି କାନ୍ଦିବାକୁ ଲଗିଲେ । "କୁମାର, ମୁଁ ଅବକାରୀ ମନ୍ତ୍ରୀ ଥିବାବେଳେ, ନୂଆ ମର୍ସିଡ଼ିସ୍ ଗାଡ଼ି କିଣି, ବିଦେଶୀ ମଦଟିକେ ପାନକରି, ଗାଡ଼ି ଚଲାଉଥିଲି, ଗୋଟାଏ ଦୁର୍ଘଟଣା ଘଟିଥିଲା, ମୋର ମୁହଁ ହାତର ମାଂସ ଛିଣ୍ଡି ଯାଇଥିଲା, ନାକ ଉଡ଼ି ଯାଇଥିଲା, ସରକାରୀ ତହବିଲ୍‌ରୁ ଦଶଲକ୍ଷ ଟଙ୍କା ଖର୍ଚ୍ଚକରି ବିଦେଶରେ ସବୁ ଅଙ୍ଗରେ ପ୍ଲାଷ୍ଟିକ୍ ସର୍ଜରୀ ମାଧ୍ୟମରେ, ପୁନର୍ବାର ଚେହେରାଟି ଫେରି ପାଇଥିଲି, ହେଇଦେଖ ତମର ବଦ୍‌ମାସ୍ ପର, ପୁଣି ସବୁ ନେଇଗଲା" ।

ମୁଁ କେବଳ 'ଆଃହା' 'ଆଃହା' କରି, ସତ୍ୟର ବିକୃତ ସ୍ୱରୂପକୁ ନିକଟରୁ ପ୍ରତ୍ୟକ୍ଷ କରିବା ବ୍ୟତୀତ ଆଉ କିଛି କରିପାରିନଥିଲି ।

ପୁଣିଥରେ ପ୍ରତିଜ୍ଞା କଲି, ଯାବତ୍ ଜୀବ, ପରଟିକୁ ଗୋପନ ରଖିବି । କିନ୍ତୁ ସତ୍ୟ ଅପ୍ରକାଶ ରହେନା ।

କିଛିଦିନ ପରେ ମୋର ବିଦେଶାଗତ କଂପ୍ୟୁଟର୍ ଇଂଜିନିୟର ପୁତୁରା ମୋର ସାହାଯ୍ୟ ଗୁହିଁଥିଲା । ତାହାର ଅଭିଯୋଗ ଯେ, ଜଣେ ବିତ୍ତଶାଳୀ, ମୁଖ୍ୟମନ୍ତ୍ରୀ, ତାର ବାପା ମାଆଙ୍କୁ, ଦୁଇଟି ବଡ ବଡ଼ କୋଠା ଘର, ପାଞ୍ଚଲକ୍ଷଟଙ୍କା, କାର୍ ପ୍ରଭୃତି ଯୌତୁକ ମାଧ୍ୟମରେ, ତାଙ୍କର, ଚେୟ୍‌ଟୀନାକୀ ଭୁଷୁଣ୍ଡି ମେଟ୍ରିକ୍‌ଫେଲ ଝିଅଟି ସହ ବିବାହ ସିଦ୍ଧାନ୍ତ ହୋଇ ସାରିଛି । କେବଳ ସେ ଯାଇ ଝିଅ ଦେଖିବାର ଅଦରକାରୀ ଉପଗ୍ରହ ପରେ ବିବାହ ତାରିଖ ଠିକ୍‌ହେବ । ଏହି ଶଙ୍କଟରୁ ମୋଚନପାଇଁ ସେ ମୋର ଦ୍ୱାରସ୍ଥ ।

ବିନା ଦ୍ୱିଧାରେ ପୁଣି ପରଟିକୁ ଟିକିଏ ଛିଣ୍ଡାଇ, ପୁତୁରା ହାତରେ ଦେଇ କହିଲି "ଅହଙ୍କାରୀ ଭବି-ଶଶୁର ଘରେ, ଏହା ପହଞ୍ଚିଲେ ହୁଏତ ସବୁକିଛି ସମାଧାନ ହୋଇପାରେ" ତାହାହିଁ ହେଲା । ବାପାମାଆ ସହ ବର ଗଲା ଝିଅ ଦେଖିବାକୁ ।

ସତର୍କରେ ବର, ଆସ୍ଟ୍ରେ ଉପରେ, ପରଖଣ୍ଡକୁ ରଖିଦେଲେ । ଦେବା ନେବାର ହିସାବ ନିକାଶ ପରେ, ବାପାମାଆ, ତାରିଖ ଠିକ୍ କରି ଆସିଲେ, ବରପିଲ, ଝିଅକୁ ଦେଖି ଆପଣା କପାଳରେ ହାତମାରି ନିରବରେ ବାହୁଡ଼ିଲ ।

ଅତିଥିମାନଙ୍କୁ ବିଦାୟ ଦେଇ, ଏମିତି ଜୋଇଁଟେ ପାଇ ଥିବାର ଖୁସିରେ ଇଂଜିନିୟର୍ ମହାଶୟ, ଚୁରୁଟ୍‌ରେ ନିଆଁ ଲଗାଇ, ଆଷ୍ଟ୍ରେରେ ରଖିଲେ, ପରଟିରେ ନିଆଁ ଲଗିଲ । ଆଖି ପିଛୁଳାକେ, ଇଂଜିନିୟରଙ୍କର ବିଗଟ ଅଟ୍ଟାଳିକା, ଏବଂ ତହିଁର ସମସ୍ତ ସଂପତ୍ତି, ହଠାତ୍ ହୁତ୍ ହୁତ୍ ଜଳିଗଲ । ଇଂଜିନିୟରଙ୍କର ସ୍ତ୍ରୀ କେବଳ, ତାଙ୍କର ଗୁପ୍ତ ବେଂକ୍ ଆକାଉଣ୍ଟର ଚେକ୍ ସହ ବାହାରକୁ ଦଉଡ଼ି ଆତ୍ମ-ରକ୍ଷା କରିଥିଲେ । ଇଂଜିନିୟର୍ ମର୍ମାହତ ହେଲେହେଁ ବେଶ୍ ଦାର୍ଶନିକତାରେ, ଆର ଦିନ ବେଂକ୍‌ରୁ କିଛି ପଇସା ଆଣିବାକୁ ଯାଇ ଚମକି ପଡ଼ିଲେ, ତାଙ୍କର ସମସ୍ତ ଦୁଇ ନମ୍ବର ଏକାଉଣ୍ଟରୁ ଘଟଣା ଦିନହିଁ, ମାତ୍ର ଶହେ ଟଙ୍କା ଛାଡ଼ି ସବୁ ଜମା କାଢି ନିଆ ହୋଇଛି, ଆପଣାର ଦସ୍ତଖତରେ । ଇଂଜିନିୟର ମହାଶୟ ଏଥର, ହୃଦ୍‌ରୋଗ ବିଭାଗର ଇନ୍‌ଟେନସିଭ୍ କେୟାର ୟୁନିଟ୍‌ରେ ଚିକିତ୍ସାଧୀନ । କହିବା ବାହୁଲ୍ୟ, ପୁତୁରା ମୋର, ଅନ୍ୟତ୍ର ଜଣେ ସୁଶିକ୍ଷିତା ସୁନ୍ଦରୀର ପାଣିଗ୍ରହଣ କରି ବିଦେଶରେ ଖୁସିରେ ।

ପାଠକେ, ଏହି ପରଟି, ବାରମ୍ବାର କୋଷମୁକ୍ତ ହେବାକ୍ଷଣି ଏମିତି ଅଭାବ-ନୀୟ ନାଟକ ମାଧ୍ୟମରେ ସମଗ୍ର ରାଜ୍ୟର ସାହିତ୍ୟିକ, ସାମ୍ବାଦିକ ଚିତ୍ରକର, ନେତା, ଅଭିନେତା ମାନଙ୍କୁ ତାଙ୍କର ଅସଲି ରୂପ ପଦାରେ ପକାଇ, ଅତ୍ୟନ୍ତ ହିନସ୍ତା କରିବା ପରେ ମୁଁ ଆଉ ନିରପଦ ମନେ କଲି ନାହିଁ । ବିଧାନ ସଭା, ଏବଂ ଲୋକସଭାରେ, ପରଟିର ପ୍ରାଦୁର୍ଭାବର ଭୟାବହ ପ୍ରଭାବ, ଲେଖିବାପାଇଁ, କଥାକାର ଭରସି ପାରୁନାହିଁ, କେବଳ ଏତିକି ସୂଚନା ଦେବି ଯେ, ତାହାର ସ୍ପର୍ଶରେ, ହଠାତ୍ ସତ କହି ଦେଇଥିବା ଯୋଗୁଁ, କେଇଜଣ ମନ୍ତ୍ରୀ ହନ୍ତସନ୍ତହୋଇ ପଦତ୍ୟାଗ କରିବାର ଘଟଣା ପଛରେ ଏହି ସାମାନ୍ୟ ପରଟିର ପ୍ରକୃତ ଭୂମିକା ଆପଣମାନେ ଅନୁମାନ କରିପାରନ୍ତି । ସର୍ବୋଚ୍ଚନ୍ୟାୟାଳୟର ପରୱାନାକୁ ଖାତିର କରୁନଥିବା ଜନପ୍ରତିନିଧିଙ୍କ ସମ୍ମାନାର୍ଥେ, ପ୍ରତିନିଧି ସଭାରେ ପର-ପରିକ୍ରମା, ବିବୃତି ପ୍ରକାଶରୁ ନିବୃତ୍ତ ହେବାକୁ ବାଧ୍ୟ ହେଲି ।

ଏଭଳି ଏକ ସତ୍ୟ ସହ ମୋର ସହବାସ ମଧ୍ୟ ସୁବିଧା ଜନକ ନଥିଲା । ସରକାରୀ ଚାକିରୀ କରୁଛି । ମଝିରେ ମଝିରେ ଉନ୍ନୟନ ଯୋଜନା ମାନଙ୍କର ସମୀକ୍ଷା କରି ଉପରିସ୍ଥ ହାକିମଙ୍କୁ ପୂର୍ଣ୍ଣାଙ୍ଗ ରିପୋର୍ଟ ଦାଖଲ କରିବା ମୋର ଦାୟିତ୍ୱ । ସେଭଳି ରିପୋର୍ଟ୍‌ରେ, ମନ୍ତ୍ରୀ ଉଦ୍‌ଘାଟିତ ଜଳଭଣ୍ଡାର, ନଦୀପୋଲ, ରାସ୍ତାଘାଟ, କୋଠାବାଡ଼ି ମାନ, ମୋଟେହିଁ ନଥିବାର, ନଜିର୍ ଅଜାଣତରେ ଲେଖିହୋଇଯିବା ଯୋଗୁଁ ଅନେକ ବାର, ଚାକିରୀ ଯାଉଁ ଯାଉଁ ରହିଯାଇଛି । ଅସତ୍ୟର ସଂସାରରେ ମୋ କଲମର ବା ତାକତ୍ କେତେ । ତେବେ ଅସତ୍ୟ ତଥ୍ୟ ପରିବେଷଣରେ ଅତ୍ୟନ୍ତ ପଟୁ ଏହି ଲେଖକ ସତ୍ୟଧର୍ମୀ ତଥ୍ୟର ଉପସ୍ଥାପନ ପଛରେ ପକ୍ଷୀପରର ସାମୟିକ ପ୍ରଭାବ ହିଁ ଦାୟି ବୋଲି ମନେହୁଏ ।

ଆୟକର ବିଭାଗର ଜଣେ ଗୋଇନ୍ଦା କର୍ମଚାରୀ ଏହି ପକ୍ଷୀ ପରଟି ନେଇ ଜଣେ କଳା ବଜାରୀର ଘରେ ଚଢ଼ାଉ ବେଳେ, ଘର ମାଲିକ ତାଙ୍କ ପାଖରେ କୌଣସି କଳାଧନ ନଥିବା ଘୋଷଣା କରିଥିଲେ ଏବଂ ତନଖି ବେଳେ ଗୃହ ସ୍ୱାମୀଙ୍କର ସ୍ତ୍ରୀ ଟ୍ରେଜରୀରୁ ନୋଟ୍ ବିଡାମାନ କାଢି ନିଆଁରେ ପୋଡ଼ି ଦେଇଥିବା ଯୋଗୁଁ, ସତରେ କଳା ପାଉଁଶ କେଇଗଦା କର୍ମଚାରୀଙ୍କର ହସ୍ତଗତ ହୋଇଥିଲା ।

ପରଟିର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବରେ ମୋର ପରିବାର ପ୍ରବଳ ଶଂକଟର ସମ୍ମୁଖୀନ ହେଲା । ବିଥୀକା, ପୁତ୍ରକନ୍ୟା ସହ ମୋତେ ପରିତ୍ୟାଗ କରିବାର ଶପଥ ନେଲେ । ସେ ବା କ'ଣ କରନ୍ତେ– ପରପ୍ରଭାବ– ପିଲମାନେ ପରୀକ୍ଷା ଖାତାରେ ଯାହାଲେଖିଲେ ତହିଁରେ, ପ୍ରଜ୍ଞାପ୍ଲୁତ ପ୍ରଫେସର୍‌ମାନେ,–ତାଙ୍କୁ ପୁନର୍ବାର ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପରାମର୍ଶ ଦେଲେ । କଂଟ୍ରୋଲ ଦୋକାନୀ ଠାରୁ ପର ପିଡୀତ ପ୍ରତିପକ୍ଷ ମୋ ବିରୁଦ୍ଧରେ ଏକରକମ ଯୁଦ୍ଧ ଘୋଷଣା କରିଦେଲେ । ଜଗତ୍‌ମିଥ୍ୟା– ଜଗତ୍‌ମିଥ୍ୟା– କହି ମୋର ପାଗଳ ଅବସ୍ଥା । ପରିତ୍ରାଣ ପାଇଁ ପରମ ପୁରୁଷ ପରମାନନ୍ଦଙ୍କୁ ପ୍ରତ୍ୟହ ପ୍ରାର୍ଥନା କଲି ।

ଦିନେ ପ୍ରତ୍ୟୁଷରେ ସ୍ୱପ୍ନାବିଷ୍ଟ ଅବସ୍ଥା ଅନୁଭବ କଲି । କିଏ ଜଣେ କହୁଛି " ହେ ପରହତ ପାର୍ଥିବପୁରୁଷ, ପୁରୁଷୋତ୍ତମରେ ପରଟିକୁ ପ୍ରତ୍ୟାର୍ପଣ କର, ନହେଲେ ପରଲୋକ ପାଇଁ ପ୍ରସ୍ତୁତ ହୁଅ " ।

ଏହା ମୋର ଭ୍ରମ ହୋଇପାରେ, ମାତ୍ର ସେକ୍ଷଣି, ସ୍ନାନ ସାରି ପୁରୁଷୋତ୍ତମ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପଦ୍ମଟି ସହ ଯାତ୍ରା ଆରମ୍ଭ କଲି ।

ସହର ଉପକଣ୍ଠରେ—ଜଣେ ଅଦ୍ଭୁତ ବୃଦ୍ଧ ମୋର ପଥ ପ୍ରତିରୋଧ କରି କହିଲେ " ବାବୁ, ଦରିଦ୍ର ବ୍ରାହ୍ମଣ, ବଦ୍ରୀନାଥରୁ ଆସିଛି, ମୋତେ ଟିକିଏ ପୁରୁଷୋତ୍ତମ ନେଇଯିବ" ? ମୁଁ ବୃଦ୍ଧଙ୍କୁ ପାଖରେ ବସାଇଲି ବୃଦ୍ଧଙ୍କୁ ନିକଟରୁ ଦେଖିଲି । ବୃଦ୍ଧ ପିନ୍ଧିଥିଲେ ଗୋଟାଏ ପୁରୁଣା ଧଳା କୋଟ୍ । କୋଟ୍‌ଟି ସୁନ୍ଦର ପଶମରେ ତିଆରି । ତାଙ୍କର ନାକଟି ପକ୍ଷୀ ଚଞ୍ଚୁପ୍ରାୟ ଏବଂ କଥାଗୁଡ଼ିକ ଅତ୍ୟନ୍ତ ଅସ୍ୱାଭାବିକ ଅଥଚ ପ୍ରାଣମୟ ମନେ ହେଉଥିଲା । ବୃଦ୍ଧ ତାଙ୍କର ଗୋଟାଏ ହାତ ଆଗସିଟ୍‌ରେ ରଖିଥିଲେ ଏବଂ, ମୁଁ ଦେଖିଲି, ଧଳା କୋଟ୍‌ର ଗୋଟିଏ ଜାଗା ଚିରିଯାଇଛି । ମୁଁ ପଚାରିଲି ମହାଶୟ "ଶୁଣିଥିଲି ହିମାଳୟରେ ଏମିତି ପଶମ ମିଳେ । ଏଡ଼େ ସୁନ୍ଦର କୋଟ୍‌ରୁ ଏଇଖଣ୍ଡ ଛିଣ୍ଡିଲା କେମିତି ?"

ବୃଦ୍ଧ କହିଲେ "ବାବା ! କଳିର ଅଣଗ୍ରୁଷ ପବନ ବହୁଛି । ତିନି-ପୁରକୁ ଖେଦିଲା ବେଳେ, ନାରାୟଣଙ୍କର ଭକ୍ତକିଏ, ଓଟାରି ନେଇଥିବ ।"

ମୁଁ ବୃଦ୍ଧଙ୍କର ତାତ୍ତ୍ୱିକ ଉତ୍ତର ମୋତେ ବୁଝିପାରିଲି ନାହିଁ । ମନେହେଲା, କୋଟରେ ପଦ୍ମଟି ଖଂଜିଦେଲେ ନାଖିଯିବ ପରା । ଏହାଭାବି, ଖୋଳରୁ ପଦ୍ମଟିକୁ କାଢ଼ି ବୃଦ୍ଧଙ୍କର ଛିଣ୍ଡା କୋଟରେ ଖଂଜିଦେଲି । ଆଶ୍ଚର୍ଯ୍ୟ ପଦ୍ମଟି ଠିକ୍ ଲାଖିଗଲା, ସତେ କି ସେଇଠୁଁହିଁ ଖସିପଡ଼ିଥିଲା । ବୃଦ୍ଧ ମୋ ଉପରେ ହାତରଖି କହିଲେ "ବାବା, ଜଗତ୍ ମିଥ୍ୟା, ସତ୍ୟ କେବଳ ସଦ୍‌ଭାବ- କାହାଠି ଅଭାବ ଦେଖି ସୁହୃଦ୍-ଟିଏ ସହାୟ ହେବାହିଁ ଅସାର ସଂସାରର ସାରକଥା"

ବୃଦ୍ଧଙ୍କ ଠାରୁ ଏମିତି ଅଧାବୁଝା ତାତ୍ତ୍ୱିକ କଥାମାନ ଶୁଣି, ଶ୍ରୀ ମନ୍ଦିରେ ପହଞ୍ଚିଲୁଁ । ବିହେଁମିଶି ମନ୍ଦିର ପରିକ୍ରମାପରେ, ଗରୁଡ ସ୍ତମ୍ଭ ପାଖରେ ପହଞ୍ଚିଲୁଁ । ଏତିକିବେଳେ ମୁଁ କହିଲି "ମହାଶୟ ଆପଣଙ୍କ କୋଟ୍‌ରେ ନାଖିଥିବା ପଦ୍ମଟି ନିହାତି ମାଗମ୍ଭକ । ମୁଁ ତାକୁ ଜଗନ୍ନାଥଙ୍କୁ ଅର୍ପଣ କରିବି, କିଛି ମନେ ନକଲେ, ତାକୁ ନେଇଯିବି"

ବୃଦ୍ଧ ମୋତେ ହସି ହସି କହିଲେ "ବାବା ତମେ ଦୀପ ଦିଅ, ମୁଁ ତ ଏଇଠି ଅଛି" ।

ଦୀପଜାଳି ଠାକୁରଙ୍କୁ ଚାହିଁଲି । ଅସତ୍ୟ ସଂସାର ମଧ୍ୟରେ, କଳା କଳା ଢୋଳା ମଧ୍ୟରେ ସମଗ୍ର ସଂସାରର ସତ୍ୟକୁ ପରଖିବାର ବୃଥା ପ୍ରୟାସରେ ଆପଣାର ଆଖି ବନ୍ଦକରି, ଢାବୁଡ଼ି ଧରୁଥିଲି, ସେଇ ଅନାୟତ ଆଧାରକୁ । ଆଖି ଖୋଲି ପାଖର ବୃଦ୍ଧଙ୍କୁ ଚାହିଁଲି । ଆଶ୍ଚର୍ଯ୍ୟ, ସେ ସେଠି ନଥିଲେ । ସବୁଆଡ଼େ ଖୋଜିଲି । ନିମିଷକେ ସେ ଗଲେ କୁଆଡେ । ଗରୁଡଙ୍କୁ ଚାହିଁଲି, ଦେଖିଲି, ଗରୁଡ଼ଙ୍କ ଡ଼ାହାଣ ଗୋଡ଼ରେ ଚକ୍ ଚକ୍ କରୁଛି, ସେଇ ପରଟି, ମୋଠୁଁ ଅପହଞ୍ଚ ଦୂରତ୍ୱରେ ମୁଁ ଚମକି ପଡ଼ିଲି । ଅମାନିଆ ଆବେଗରେ, ମୋର ଦୁଇ ଚକ୍ଷୁରେ ଲୋତକ ଲହଡ଼ି– ସତର୍କରେ ମୁହଁ ପୋଛିଲି, ନତମସ୍ତକ ହୋଇ ।



ଶେଷରେ ନିଷ୍ପତ୍ତି ହେଲା, ଭାରତରେ ପୁଷ୍ପ ପ୍ରଦର୍ଶନୀ ଅନୁଷ୍ଠିତ ହେବ, କିନ୍ତୁ ପାରମ୍ପରିକ ଭାବରେ ବ୍ରିଟିଶ୍ ରାଜକୁମାରୀ ଏହା ଉଦ୍‌ଘାଟନ କରିବେ । ଦ୍ୱିତୀୟରେ, ଆନ୍ତର୍ଜାତୀୟ ପୁଷ୍ପ ମେଳାର ପ୍ରତ୍ୟେକଟି ପୁଷ୍ପ ଉପଗ୍ରହ ବୈଜ୍ଞାନିକ ପଦ୍ଧତିରେ ନିର୍ବାଚନ ହେବ । ଯେହେତୁ ବ୍ୟକ୍ତିର ସାଂସ୍କୃତିକ ଓ ଆଧ୍ୟାତ୍ମିକ ଚେତନା, ଏଭଳି ପୁଷ୍ପ ବିଗ୍ରହରେ ଏକ ପ୍ରଧାନ ଆବେଗ, ନିରପେକ୍ଷତା ପାଇଁ, ମାନବୀୟ ସୌନ୍ଦର୍ଯ୍ୟ ବୋଧରେ ପରିପକ୍ୱ ଏକ ରୋବୋଟ୍ ବା ଯନ୍ତ୍ର ମାନବ ସାହାଯ୍ୟରେ ସମସ୍ତ ପ୍ରତିଯୋଗୀ ପୁଷ୍ପୋପଗ୍ରହ ପରୀକ୍ଷଣ ପରେ, ସର୍ବଶ୍ରେଷ୍ଠ ପାଇଁ, ଦଶଲକ୍ଷ ଡଲାର ଏବଂ ସମ୍ମାନାସ୍ପଦ ସୁବର୍ଣ୍ଣ ପ୍ରତିମା ସ୍ୱର୍ଣ୍ଣ କମଳ ପ୍ରଦାନ କରା- ହେବ ।

ଜାପାନୀ ବିଶେଷଜ୍ଞ ଏଭଳି ଏକ ରୋବୋଟ ପ୍ରସ୍ତୁତ କଲେ । ବିଧିବଦ୍ଧ ଭାବରେ ଭାରତର ସର୍ବତ୍ର ଆନ୍ତର୍ଜାତୀୟ ପୁଷ୍ପମେଳାର ଆୟୋଜନ ସମ୍ବନ୍ଧରେ ଖବର କାଗଜମାନ ଘୋଷଣା କଲେ ।

ଦିଲ୍ଲୀ ଡ଼ିଫେନ୍‌ସ କଲୋନୀରେ ରହନ୍ତି ଡ଼ି ଜି : ବ୍ୟୋମକେଶ । ବ୍ୟୋମ- କେଶଙ୍କର ପତ୍ନୀ ଏକଦା ଭାରତ ସୁନ୍ଦରୀ, ଶ୍ରୀମତୀ ସୁଚିତ୍ରା । ସୁଚିତ୍ରାଙ୍କ ପୁଷ୍ପପ୍ରେମର ପଟାନ୍ତର ନାହିଁ । ବିଶାଳ ବାସଭବନ ସମୀପରେ ହିଁ ସୁନ୍ଦର ଫୁଲ ବଗିଚା । ବଗିଚାରେ ଦେଶବିଦେଶର ସୁନ୍ଦର ସୁନ୍ଦର ଫୁଲ । ଫୁଲ ବଗିଚାର ସୁରକ୍ଷାରେ ପ୍ରାୟ ଗୋଟାଏ କମ୍ପାନୀ ପୋଲିସ ସଦା ସତର୍କ ପହରା ଦେଉଛନ୍ତି ।

ଥରେ କେଇଜଣ ବାଳକ ଫୁଲ ବଗିଚା ମଧ୍ୟକୁ ପଶିଯାଇଥିଲେ ସ୍କୁଲ ଯିବା ବାଟରେ । ଶ୍ରୀମତୀ ସୁଚିତ୍ରା ତାଙ୍କର ଡୋବରମାନ କୁକୁରକୁ ଛାଡ଼ିଦେଇଥିଲେ ତତ୍‌କ୍ଷଣାତ୍ ଏବଂ ବାଳକମାନଙ୍କ ମଧ୍ୟରୁ ଦି'ଜଣଙ୍କୁ ରଡରଡ଼ କରି କାଟି ଦେଇଥିଲା ଡ଼ୋବରମାନ । ସୁଚିତ୍ରା ଦେବୀ, ଘଡ଼ିଏ ଯାଏଁ କାନ୍ଦିଥିଲେ କିନ୍ତୁ ମୃତ ବାଳକଙ୍କ ପାଇଁ ନୁହେଁ, ଆହତ ଫୁଲଙ୍କ ଉଦ୍ଦେଶ୍ୟରେ ।

ଆନ୍ତର୍ଜାତୀୟ ପୁଷ୍ପ ପ୍ରଦର୍ଶନୀ ସମ୍ବାଦ ପ୍ରକାଶ ପାଇବା ପରେ, ସେ ବେଶ୍ ତତ୍ପର ହୋଇ ଉଠିଥିଲେ । ଜାତୀୟ ସ୍ତରରେ ସେ ସର୍ବଦା ପୁରସ୍କାର ପାଆନ୍ତି । ତା ପଛରେ କିନ୍ତୁ ତାଙ୍କୁ ବହୁତ ବିଦ୍ୟାବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼େ । ଯେଉଁମାନେ ଫୁଲ ନିର୍ବାଚନ ଦାୟିତ୍ୱରେ ତାଙ୍କୁ ଭିଜିଲାନ୍ସ ଭୟ ଦେଖାଇ ଅନୁକମ୍ପାର ସହାୟ ଦ୍ୱାର ଉନ୍ମୁକ୍ତ ରଖନ୍ତି କେବଳ ଗୋଟାଏ ସର୍ତ୍ତରେ, ତାଙ୍କର ଫଲ ପୁରସ୍କାର ପାଇବ ।

ରାଜଧାନୀ, ଦିଲ୍ଲୀରେ ରହନ୍ତି ବିଶିଷ୍ଟ ଶିଳ୍ପପତି ରତନଲାଲ । ରତନ୍ ଲାଲଙ୍କର ପତ୍ନୀ ରତ୍ନାଦେବୀଙ୍କ ପୁଷ୍ପ ପ୍ରୀତି ଅତୁଳନୀୟ । ଦଶଏକର ବିଶିଷ୍ଟ ପୁଷ୍ପ ବାଟିକା । ଡଃ ଭର୍ଗୀସ୍ ଉଦ୍ୟାନ ବିତ୍. ମାସିକ ଦଶହଜାର ଟଙ୍କା ବେତନ ପାଆନ୍ତି ଉଦ୍ୟାନ୍ ଉପଦେଷ୍ଟା ଭାବରେ । ସକାଳ ସମ୍ବାଦରେ ପୁଷ୍ପ ପ୍ରଦର୍ଶନୀଟି ଆସନ୍ତା ଜାନୁୟାରୀ ପହିଲାରେ ହେବ, ସମ୍ବାଦ ଶୁଣି, ରତ୍ନାଦେବୀ ମଧ୍ୟ ଗତ୍ରର ଉଡ଼ାଣରେ ବେଂଗଲୁରୁ ଫେରିଥିବା ତାଙ୍କର ସ୍ୱାମୀଙ୍କୁ ଝାଡ଼ିଝୁଡ଼ି ଉଠେଇଥିଲେ । ଶିଳ୍ପପତି ରତନଲାଲ ଚମକି ପଡ଼ିଥିଲେ, ତାଙ୍କର ଦି'ନମ୍ବର ସ୍ୱିଇସ ଏକାଉଣ୍ଟ ପ୍ରଘଟ ହୋଇଥିବା ବା ସେୟାର୍ ବଜାରରେ ଅଘଟନ ଘାଟ୍ତିର ଆଶଙ୍କାରେ । ଶ୍ରୀମତୀ ରତ୍ନା କିନ୍ତୁ ତାଙ୍କୁ ଟାଣି ନେଉଥିଲେ ନାଇଟ୍‌ଗାଉନ୍ ସହ ଉଦ୍ୟାନ ଦିଗରେ । ସେଇଠି ତାଙ୍କୁ ସମ୍ବର୍ଦ୍ଧନା ପାଇଁ ଉପସ୍ଥିତ ଶତାଧିକ ମାଳୀ ଏବଂ ଡ଼ଃ ଭର୍ଗୀଜ୍ । ରତ୍ନାଦେବୀ ସଙ୍ଗେ ସଙ୍ଗେ ପରିଗ୍ରାରିକାକୁ ଡାକିଲେ ଫୋନ ଆଣିବା ପାଇଁ । ସିଧା ଆନ୍ତର୍ଜାତୀୟ ଡ଼ାଏଲିଂରେ, ସଂଯୋଗ କଲେ ପ୍ୟାରିସ ମିଷ୍ଟର ଫ୍ରାଙ୍କ୍ ଗ୍ଲୁବୋନିଙ୍କ ସହ । ଗ୍ଲୁବୋନି, ପୁଷ୍ପଲତାରେ ଅଦ୍ଭୁତ ଜିନ୍ ରେପଣ ପ୍ରତ୍ୟାରୋପଣ କରି, ଡାଲିଆ ଗଛରେ ଜେନିଆ ଫୁଟାଇ ପାରିଛନ୍ତି । ରତ୍ନାଦେବୀ ଫୋନ୍‌ରେ କହିଲେ "ଆପଣଙ୍କର ତାତ୍ତ୍ୱିକ ସନ୍ଦର୍ଭର ସଂପୂର୍ଣ୍ଣ ଚତ୍ୱ ମୁଁ ଏକ ଲକ୍ଷ ଫ୍ରାଙ୍କ୍ ଦେଇ କିଣି ନେଇଛି, ଆପଣ ଆସି ଏଇଠି ମୋ ବଗିଚ୍ଚାରେ ଟିସୁ କଲଚର୍ ଦ୍ୱାରା ଅଦ୍ଭୁତ ଫୁଲ ତିଆରି କରନ୍ତୁ । ଶୁଣିଥିଲି, ଫ୍ରାନ୍‌ସର ସିନେ ନଦୀରେ ପ୍ରଥମେ ପଦ୍ମ ପ୍ରସ୍ଫୁଟିତ ହୋଇଥିଲା, ଅର୍ଥାତ୍ ସିନେ ନଦୀର ପଂକ ପଦ୍ମର ପ୍ରାକୃତିକ ଆଦିମ ଆବାସ । ମୋର ଅନୁରୋଧ ଆପଣ ଗୋଟାଏ ଏୟାର୍ ଇଣ୍ଡିଆ କାର୍ଗୋରେ, ଶହେଟନ୍ ସିନେ ନଦୀର ପଙ୍କ ପଠାନ୍ତୁ ମୁଁ ମୋର ପଦ୍ମ ବଣରେ ଛିଞ୍ଚିବି ।"

ମିଃ ଭର୍ଗୀସ୍ ମାସକୁ କୋଡ଼ିଏ ହଜାର ଟଙ୍କା ଦରମା ପାଆନ୍ତି । ସେ ଆଶାବାନ୍ ଯେ ପ୍ରାଚୁର୍ଯ୍ୟ ଓ ଅତ୍ୟାଧୁନିକ ଯାନ୍ତ୍ରିକ ଉପଯୋଗ ମାଧ୍ୟମରେ ରତ୍ନାଦେବୀ ଆନ୍ତର୍ଜାତୀୟ ପୁଷ୍ପ ମେଳାର ପ୍ରଥମ ପୁରସ୍କାର ପାଇବେ ।

ଫୁଲମଣି ବ୍ୟୋମକେଶଙ୍କର ଗୃହକରଣୀ । ଯମୁନା ନଗର, ନର୍ଦ୍ଦମା କଡରେ ଗୋଟାଏ ଟିକି କୁଡ଼ିଆ ଘରେ ସେ ରହେ । ଭଙ୍ଗା ଟିଣ ଓ ଛିଣ୍ଡା ବସ୍ତାରେ ତିଆରି ଗୁମୁଟି । ସେଠିକୁ ସାଧାରଣ ଲୋକ କ'ଣ ବୁଲା କୁକୁର ମଧ୍ୟ ଯାଇ ପାରେନା । ଆଣ୍ଠୁଏ ନର୍ଦ୍ଦମା ପାଣି ଡ଼େଇଁଲେ ଦିଲ୍ଲୀ କର୍ପୋରେସନ୍‌ର ମଇଳା ଗୋଦାମ ତା କଡ଼କୁ, ଏଭଳି ଅନେକ ଟିକିଟିକି ଘର । କଳା ଶରୀର, ଗୋଟାଏ ଗୋଡ଼ ପୋଲିଓ ଗ୍ରସ୍ତ, ଗୋଟାଏ ଆଖିର ଡ଼ୋଳା ବାହାରକୁ ଦେଖାଯାଏ । ନର୍ଦ୍ଦମା ପାଖରେ କୌଣସି ପାପଗର୍ଭାର ପରିତ୍ୟକ୍ତା ଭ୍ରୁଣ, ଫୁଲମଣି–ଗୁହ ଗୋବର ମଝିରେ ଦୀର୍ଘ ଷୋହଳ ବର୍ଷ ହେଲା ବଞ୍ଚିଛି । ମଇଳା ଫିଙ୍ଗା ଗାଡ଼ିରୁ ପ୍ଲାଷ୍ଟିକ, କାଚ ବୋତଲ ନେଇ ବିକ୍ରୀକରି ଚଳୁଥିଲା ।

ଘଟଣାଟି ହେଲା ବ୍ୟୋମକେଶଙ୍କର ମାଆ ବୁଢ଼ୀଙ୍କୁ ଅଶୀବର୍ଷ ହେବ । ଗଲା ତିନିବର୍ଷ ହେଲା ସେ ଚଳତ୍ ଶକ୍ତି ରହିତା । ସେଇ ଖଟରେ ଏକ ଦୁଇ କରି ଦେଉଛନ୍ତି । ବ୍ୟୋମକେଶ ମାଆଙ୍କ ପାଇଁ ତାଙ୍କ ବଂଗଳେକୁ ଲାଗି ଏକ ଘର କରିଛନ୍ତି ଫୁଲ ବଗିଚା ପାଖରେ । କିନ୍ତୁ ଗୁହମୁତ ସଫା କରିବା ପାଇଁ କନେଷ୍ଟବଲ୍ ମାନେ ନାରାଜ । ବୁଢ଼ୀଙ୍କର ଏଭଳି ଅବସ୍ଥାରେ ସୁନ୍ଦରୀ ସୁଚିତ୍ରା ଶାଶୁଙ୍କ ପାଖ ମାଡ଼ନ୍ତି ନାହିଁ । ବ୍ୟୋମକେଶ ବଡ଼ କଷ୍ଟରେ ପାଇଥିଲେ ଫୁଲମଣିକୁ ଯିଏ, ଦିନକୁ ଦୁଇଟଙ୍କା ବଦଳରେ ମାଆଙ୍କର ସବୁ କାମ କରିଦିଏ । ମାଆଙ୍କର ରହିବା ଘର ମୁହଁଟି ଗେରେଜ ପାଖକୁ ଏବଂ ଫୁଲମଣି ବଡ଼ି ସକାଳରୁ ଆସି ସନ୍ଧ୍ୟା ଯାଏଁ ବୁଢୀଙ୍କୁ ଗାଧୋଇ ଦେଇ ଲୁଗା ବଦଳାଇ ଏକ ଦୁଇରେ ସାହାଯ୍ୟ କରେ ।

ବୁଢୀ ସିନା ହାତଗୋଡ଼ ପଡ଼ିଯାଇଛି, ବେଶ କଥା କହନ୍ତି ଏବଂ କଥା କହନ୍ତି, ମାତ୍ର ଜଣକୁ ,ଫୁଲମଣିକୁ । ଯେହେତୁ ଫୁଲମଣି ହିଁ ସେଇ ପୂତିଗନ୍ଧମୟ ଘରେ ଗୁଲବୁଲ କରେ । ବର୍ଷ ବର୍ଷ ଧରି ଆଉ କିଏ ସେ ଘରକୁ ଆସନ୍ତି ନାହିଁ ।

ଫୁଲମଣିକୁ ହିଁ ସେ କହନ୍ତି ନିଜ କଥା, ନିଜ ପାରିବା ପୁଅର କଥା । ବ୍ୟୋମକେଶ କେମିତି ପିଲାବେଳେ ବୁଢୀ କୋଳରେ ଏକ ଦୁନ୍ଦ କରି ଦେଉଥିଲେ ଏବଂ ସେ କେମିତି ତାକୁ ବାଡଉଥିଲେ, ସେ ଗୁଡ଼ିକ ବଖାଣନ୍ତି ।

କିନ୍ତୁ ଦଶମାସ ତଳେ ଫୁଲମଣି ଗୋଟାଏ ବିରଟ ଦୁର୍ଘଟଣାରେ ପଡ଼ିଲା । ଦିନକର କଥା । ବୁଢୀର ଦେହ ଭଲ ନଥାଏ । ବାରଘାର ପଛରୁ ପାଣି ଗଳି ପଡୁଥାଏ । ତାକୁ ରାତି ଅଧଯାଏ ରହିବାକୁ ହେଲା । ରାତି ଅଧରେ ଫେରିବା ବେଳେ ଗେରେଜରେ ଗାଡ଼ିକୁ ରଖି ଫେରୁଥାଏ, ଡ଼ି. ଜି. ସାହେବଙ୍କର ପୁଅ । ଖୁବ୍ ସୁନ୍ଦର ଦେଖିବାକୁ । ନାଇଟ୍ କ୍ଲବରୁ ଫେରିବା ବେଳ ତାର । ପ୍ରଚୁର ନିଶାବଟିକା ମେଣ୍ଡ୍ରେକ୍ସ ଖାଇ ତା'ର ଗୋଡ ଟଳଟଳ । ଆଖି ଦୁଇଟା ନାଲି ନାଲି । ସାମ୍ନାରେ ଫୁଲମଣିକୁ ଦେଖିଲା । କାଳେ ଛୁଇଁ ହୋଇଯିବ ଭାବି, ଫୁଲମଣି ଗୋଟିଏ କଣକୁ ଘୁଞ୍ଚିଗଲା । କିନ୍ତୁ ନିଶାଶକ୍ତ ଯୁବକ ତାକୁ ଦୁଇ ହାତରେ ଟାଣି-ଆଣି କହିଲା "ବାଃ ବାଃ, ଏମିତି ଲାସ୍ୟମୟୀ, ଲାବଣ୍ୟମୟୀ, ସୁନ୍ଦରୀଟିଏ ଏଇଠି ।"

ତାପରେ ଫୁଲମଣିର ଚିତ୍କାରକୁ ଅପେକ୍ଷା ନକରି ସେଇଠି ହିଁ ମେଣ୍ଟାଇ ନେଲା ତାର ପାଶବିକ କ୍ଷୁଧା ।

ଧର୍ଷିତା ଫୁଲମଣି ପ୍ରଥମେ ଚକିତ ହୋଇ ଅଚେତ ହୋଇଗଲା । ଘଟଣାଟି ବୁଝିବା ବେଳକୁ ସେ ରକ୍ତାକ୍ତ ଅବସ୍ଥାରେ ପଡ଼ିଛି । ସମଗ୍ର ସହରକୁ ଶୁଁହିଲା । ସହର ଶୋଇଛି । କେବେହେଁ ସେ ଚିନ୍ତା କରି ନଥିଲା ଯେ, ତାଭଳି କୁରୂପୀ ମଧ୍ୟରେ ଏଭଳି ପଶୁଙ୍କର ଉନ୍ମାଦ ପାଇଁ ଉପାଦାନ ଥାଇପାରେ । ସେ କାହୁଁ ଜାଣିବ, ମେଣ୍ଡ୍ରେକ୍ସ ଆଖି ମେଣ୍ଢୀକୁ ମଧ୍ୟ ଉର୍ବଶୀର ରୂପ ଲାବଣ୍ୟ ଦେଇପାରେ ।

କିନ୍ତୁ ପରଦିନ ମାନଙ୍କରେ ଫୁଲମଣିର ଦେହରେ ଏକ ଅଦ୍ଭୁତ ପରିବର୍ତ୍ତନ ଦେଖାଗଲା । ସମୟ ସମୟରେ ବାନ୍ତି ଏବଂ ଅବଶ ପରେ, ପେଟର ଆକାର ବଢିବାକୁ ଲାଗିଲା । ସେ ଜାଣିଲା, ସଇତାନର ଶିଶୁଟି ବଢୁଛି ଭିତରେ । ସେମିତି ସେ ଡ଼ିଃ ଜିଙ୍କର ଘରକୁ ଯାଏ, ଏଥର ଆଉ ଏକ ଆବେଗରେ ଅତି ଆତ୍ମୀୟତାରେ

ସେବାକରେ ମାଆଙ୍କର । ବୁଢୀ ଦରଦୀ ଫୁଲମଣିର ହାବଭାବରେ ଲକ୍ଷ୍ୟ କରେ ଏକ ଅଦ୍ଭୁତ କାରୁଣ୍ୟ ।

କିନ୍ତୁ ଥରେ ରାତିରେ ଫୁଲମଣି ଖୁବ୍ କଷ୍ଟ ପାଉଥିଲା । ଅର୍ଦ୍ଧ ରାତିରେ ଯେତେବେଳେ ସମଗ୍ର ସହର ଶୁନ୍ଶାନ୍, କେବଳ ମଇଳା ଗଦା ମଧ୍ୟରେ ବୁଲା କୁକୁର କେଇଟି, ପରସ୍ପର ବୋବାଳି ଛାଡୁଛନ୍ତି, ଫୁଲମଣି ଜନ୍ମଦେଲା ଖୁବ୍ ସୁନ୍ଦର ଲାବଣ୍ୟମୟ ପୁତ୍ର ସନ୍ତାନଟାଏ । ପାଖରେ କିଏ ନାହିଁ, ବଡ଼ କଷ୍ଟରେ ଉଠି, ପାଖରେ ପଡ଼ିଥିବା ଖପରା ଖଣ୍ଡରେ ନାହିଁ କାଟି ଫୁଲମଣି କ୍ରନ୍ଦନରତ ଶିଶୁଟିକୁ କୋଳକୁ ନେଲା । କୋଳରେ ଶିଶୁଟିକୁ ଜାବୁଡ଼ି ଫୁଲମଣି ଆବିଷ୍କାର କରୁଥିଲା, ଆପଣାର ଅସ୍ଥିମଜ୍ଜାରେ ଏକ ଅଦ୍ଭୁତ ମାତୃତ୍ୱର ପରିତୃପ୍ତି । ପିଲାଟି କିନ୍ତୁ କାନ୍ଦୁଥାଏ, ତାହାର କାନ୍ଦ ବନ୍ଦ ହେଉ ନଥାଏ ।

ଟିକି ଛିଣ୍ଡା ମଳିଣା ଉପରେ କଣ୍ଡା କନାରେ ପିଲାଟିକୁ ଘୋଡାଇ, ଫୁଲମଣି, ଉଠି ଛିଡ଼ାହେଲା ।

ପାଖ ମାଠିଆରେ ପାଣି ରଖେ । ପାଣି ସରିଯାଇଛି । ମାଠିଆଟି ଘେନି, ଧୀରେ ଧୀରେ ନର୍ଦ୍ଦମା ପାରିହୋଇ, ଫୁଲମଣି ଚାଲିଲା ପାଣିପାଇଁ । ବହୁ ଦୂରରେ ଗୋଟାଏ ସର୍ବସାଧାରଣଙ୍କର ପାଣିଟେପ୍ । ସେଇଠୁଁ ପାଣି ସଂଗ୍ରହ କରି ଅବଶ ପାଦ ଦୁଇଟାର ବେଗ ବଢାଇ ପହଞ୍ଚିଲା ପୁଣି ଥରେ କୁଡ଼ିଆରେ । କିନ୍ତୁ, ପିଲାର କାନ୍ଦ ଆଉ ଶୁଭୁ ନଥିଲା । ପିଲାଟିକୁ ଓଟାରି ଆଣିଲା କୋଳକୁ ମାତ୍ର--ଏକ ଅପୂର୍ବ ଉଷ୍ମ ଉଜାଡ଼ି ଦେଉଥିବା ଶରୀର ହୋଇଯାଇଥିଲା ହିମ ଶୀତଳ । ଫୁଲମଣି ଚିତ୍କାର କଲା । ଖୁବ୍ ଓଲଟ ପାଲଟ କଲା ମଲପୁଅକୁ । ପୂରିତ ଥନରେ ଜାକି ଧରିଲା ବାରମ୍ବାର । କିନ୍ତୁ ସେଇ ମାଂସ ପିଣ୍ଡୁଳା ହୋଇଯାଇଥିଲା ନିଷ୍ପନ୍ଦ ।

ସମଗ୍ର ସହର ନିର୍ବେଦ ନିଦରେ ଶୋଇଥାଏ । ଫୁଲମଣି ଆକାଶକୁ ଚାହିଁଲା । ଆକାଶରେ ଚନ୍ଦ୍ର, ତାରା, ଯେମିତିକି ସେମିତି—ସେ ତ ଜାଣି ନଥିଲା ସଂସାର କ'ଣ, ପରିବାର କ'ଣ, ବାପା, ମାଆ, ଭାଇ, ଭଉଣୀ, ସ୍ୱାମୀ ଏସବୁର ଅର୍ଥ କ'ଣ ? ଗୋଟାଏ ଗୋଟାଏ ମଣିଷକୁ ଜାଣିବା ପାଇଁ ନାମଟିମାନ ? କିନ୍ତୁ

ସନ୍ତାନଟିକୁ ପ୍ରଥମେ ଟେକିନେବା ବେଳେ ପ୍ରଥମ ଥର ସେ ଅନୁଭବ କରିଥିଲା 'ପୁଅ' ଜଣକର ନାଁଆ ନୁହଁ, 'ପୁଅ' ଏକ ସ୍ନାୟବିକ, ସମ୍ପର୍କ, ରକ୍ତାକ୍ତ ନିର୍ଯ୍ୟାସର ପ୍ରତିମୂର୍ତ୍ତି ଚେତନାଟିଏ ।

ସକାଳ ପାହି ଆସୁଥିଲା, ଫୁଲମଣିର କାନ୍ଦ ସରି, ଆଖିରୁ କେବଳ ବହୁଥିଲା ଉତପ୍ତ ଦୁଇଧାର ଲୁହ ।

ଆଗରେ ସଫେଦ ସୁନ୍ଦର ଖେଳଣାଟେ ଭଳି ତାର ମୃତ ଶିଶୁର ଶବ । ଫୁଲମଣି, ଆପଣା ରେକର୍ଷଣ କର ଲୁହା ଚଟୁରେ-ସେଇ କୁଡ଼ିଆ ସମ୍ମୁଖରେ ଗାତ-ଟିଏ ଖୋଳିଲା । ଶେଷ ଥର ପାଇଁ ପୁଅର ଶବକୁ ଜାବୁଡ଼ି ଘଡ଼ିଏ ଯାଏଁ କାନ୍ଦିଲା । ତାପରେ, ଆପଣା ପଣତରୁ ଅଧେ ଚିରି, ପିଲାଟିକୁ ଭଲ କରି ଘୋଡାଇ ଦେଲା ଏବଂ ଶୁଆଇ ଦେଲା ଗାତରେ । ଏବଂ ଲୁହଭିଜା ଆଞ୍ଜୁଳା ଆଞ୍ଜୁଳା ମାଟି ନେଇ, ପୋତି ଦେଲା ପୁଅକୁ ।

ସକାଳର ସୂର୍ଯ୍ୟ ଯେମିତି ବେଖାତିର କରି, ଧିକ୍କାର କରୁଥିଲା ଫୁଲମଣିକୁ । ଫୁଲମଣି ସେଇ ଅବସ୍ଥାରେ ଆସିଲା, ଡ଼ି. ଜି. ଙ୍କର ଘର । ତାର ଏଭଳି ଅବସ୍ଥା ଦେଖି ମାଆ ବୁଢ଼ୀ ଆପଣା ପୁରୁଣା ଶାଢୀରୁ ଖଣ୍ଡେ ପିନ୍ଧିବାକୁ କହିଲେ । ପୁଣି ଆରମ୍ଭ ହେଲା, ଫୁଲମଣିର ରୁଟିନ୍ କାମ ।

ଫୁଲମଣି, ସନ୍ଧ୍ୟାରେ ଫେରିବା ବେଳେ ଦେଖିଲା ସେଦିନ ବଗିଚାରେ ଅନେକ ଲୋକ ଲାଗିଥାଆନ୍ତି । ଦେଶ ବିଦେଶର ଅନେକ ଫୁଲଗଛ ଆସିଥାଏ, ସେଗୁଡ଼ିକ ବାଛି ବାଛି, ବଗିଚାରେ ଲଗାହେଉଥାଏ । ଅଦରକାରୀ ଗଛମାନ ଫୋପାଡ଼ି ଦେଉ ଥାନ୍ତି ମାଳୀମାନେ । ଫୁଲମଣି ତହିଁରୁ ମେଞ୍ଚାଏ ଗଛ ଗୋଟାଇଲା ଏବଂ ଘରକୁ ଫେରିଲା ।

ଘରକୁ ପହଞ୍ଚି ସେଇ ସଦ୍ୟ ପୋତା ଗାତ ପାଖରେ ବସି ପଡ଼ିଲା । ଫୁଲଗଛକୁ ସେଇଠି ପୋତିଦେଲା ଏବଂ ପୁଣି ଥରେ ଧାର ଧାର ଲୁହ ବହି ଭିଜିଗଲା ସେଇ ମାଟିରେ ।

ସମୟ ଗଡ଼ି ଚାଲିଥାଏ । ନୂଆ ବର୍ଷ, ଆଉ ମାତ୍ର ଗୋଟାଏ ଦିନ । ଡ଼ି. ଜି. ସାହେବଙ୍କର ବଛା ବଛା ଫୁଲ ଗମଲମାନ ଚାଲିଗଲାଣି ବିଜ୍ଞାନ ଭବନ, ପୁଷ୍ପ ପ୍ରଦର୍ଶନୀ ମଣ୍ଡପକୁ । କେବଳ ପଛରେ ରହିଯାଇ ଥାଏ, ଅଶ୍ୱତ୍‌ଥ ବୃକ୍ଷର ବନ୍‌ସାଇ-ଟିଏ । ସୁଚିତ୍ରା ଦେବୀ ଫୁଲମଣିକୁ କହିଲେ, ବନ୍‌ସାଇ କୁଣ୍ଡଟି ମୁଣ୍ଡେଇ ବିଜ୍ଞାନ ଭବନରେ ପହଞ୍ଚାଇବା ପାଇଁ ।

କୁଣ୍ଡଟି ନେଇ ଫୁଲମଣି ଗଲା ବିଜ୍ଞାନ ଭବନ । ସେଇଠି କହିଲା, "ସୁଚିତ୍ରା ଦେବୀଙ୍କର କୁଣ୍ଡ ରଖ, କିନ୍ତୁ ଏସବୁ କଣ ହେଉଛି ?"

ଜଣେ କିଏ ଫୁଲ କୁଣ୍ଡ ତା ହାତରୁ ନେଇ କହିଲା, "ଆରେ ତୁ କ'ଣ ପାଇବୁ ? ଏଇଠି ଲଟେରୀ ହେବ । ଯାହାର ନାମ ଉଠିବ ସେ ପାଇବ ଦଶ ଲକ୍ଷ ଡ଼ଲାର୍‌, ମାନେ ତୁ ଟେକି ପାରିବୁ ନାହିଁ ସେତେ ନୋଟ୍‌ ବିଡ଼ା ।"

ଫୁଲମଣି କିନ୍ତୁ ଲଟେରୀ କଥା ଜାଣେ । ଥରେ ସେଇ ଘୁମୁଟୀ ପାଖର ଗମ୍ଭୁଲୁ ରିକ୍‌ସାବାଲା ନାମରେ ଲଟେରୀ ଉଠିଥିଲା, ସେ ଏବେ କୋଠା ଘରେ ରହୁଛି । ସେ ମନେ ମନେ ସ୍ଥିର କଲା, ସେ ମଧ୍ୟ ଲଟେରୀରେ ଭାଗନେବ ।

ନିଜ କୁଡ଼ିଆ ଘରକୁ ଗଲା । ଏବେ ଫୁଲ ଚାର ସବୁ ସଂପୂର୍ଣ୍ଣ ଫୁଲ ଗଛ ବନି ଯାଇଛନ୍ତି । ନାନା ଜାତିକା ଫୁଲ ଫୁଟିଛି ମାଟି ଉପରେ । ଫୁଲମଣି ମାଠିଆକୁ ଜଗିଡ଼ି ତିନିଟି ଖପର କଲା । ପ୍ରତି ଖପରରେ ଫୁଲଗଛ ମାନ ଓଟାରି ସତର୍କରେ ସଜାଡ଼ି ଦେଲା । ଗୋଟାଏ ମଇଳା ଗାଣ୍ଡୁଆ ଭିତରେ ତାକୁ ପୁରାଇ ଘେନିଗଲା ବିଜ୍ଞାନ ମଣ୍ଡପ ।

ସେଠି କାଉଣ୍ଟର୍‌ରେ ଲୋକଟି ପଚାରିଲା 'ଏସବୁ କାହାର' ? ଫୁଲମଣି କହିଲା, 'ଲେଖ ଫୁଲମଣି, ଯମୁନା ନଗର' ।

ତାପରେ ଡ଼ି: ଜି: ସାହେବଙ୍କ ଘରକୁ ଆସିଲା । ସେଇଠି ଅନେକ ଗାଡ଼ି ମଟରର ଭିଡ଼ । ସହରରେ ଦଙ୍ଗା ଲାଗିଲେ ସେମିତି ଭିଡ଼ଜମେ ।

ସେତିକିବେଳେ ଡ଼ି: ଜି: ସାହେବଙ୍କ ଘରେ, ଦେଶର ତୁଙ୍ଗ ବୈଜ୍ଞାନିକମାନଙ୍କର ଏକ ଗୁପ୍ତ ବୈଠକ ଚାଲିଥାଏ । ସେମାନେ ଏକ ମସ୍ତବଡ଼ ସମସ୍ୟାର ସମ୍ମୁଖୀନ । ଘଟଣାଟି ହେଲା, ପୁଷ୍ପ ନିର୍ବାଚନ ପାଇଁ ଯେଉଁ ରୋବୋଟ୍‌ଟି ଆସିଛି । ପ୍ଲେନରୁ ଓହ୍ଲାଇ, କଡ଼ା ନିରପତ୍ତା ମଧ୍ୟରେ ଡ଼ି. ଜି ଙ୍କର ଘର ପାଖରେ ରଖାହୋଇଛି । ତହିଁର ଗୋଟାଏ ଅତି ସ୍ପର୍ଶକାତର, ହାଇ ସେନ୍‌ସିଟିଭ୍ ମାଇକ୍ରୋଚିପ୍‌ର, ଆଭରଣଟି ହଠାତ୍ ଖସିପଡ଼ିଛି । ତାହାରି ତେଜସ୍କ୍ରିୟ ବିକିରଣ ସାଧାରଣ ଆଖିକୁ ଦୃଶ୍ୟମାନ ନହେଲେ ହେଁ, ତାହାର ପ୍ରଭାବ ଏତେ ଶକ୍ତ ଯେ, ସେଇ ଆଭରଣଟିକୁ କୌଣସି ମଣିଷ ଉଠାଇଲେ ବିକିରଣ ସଂସର୍ଗରେ ଆସି ସେ ବିକଳାଙ୍ଗ ହୋଇପାରେ । ତେଣୁ ଯାଂତ୍ରକ ଉପାୟରେ ଅନ୍ୟ ଏକ ରୋବଟହିଁ ସେଇ ଆଭରଣଟିକୁ ଆଉ ଥରେ ଯଥା ସ୍ଥାନରେ ଖଞ୍ଜି ପାରିବ । ସେଥିପାଇଁ, ସମୟ ଦରକାର । ଅଥଚ ଆସନ୍ତା କାଲି ପୁଷ୍ପ ପ୍ରଦର୍ଶନୀ ପାଇଁ ରାଜକୁମାରୀ ଆସି ସାରିଲେଣି । ଅବଶ୍ୟ କିଏ ଜଣେ ଯଦି ସାହସ କରି ତ୍ଵରାଟି ଖଞ୍ଜିଦିଏ, ଦେଶ ଏକ ବିରାଟ ଶଙ୍କଟରୁ ରକ୍ଷା ପାଇଯାଆନ୍ତା । ବୈଜ୍ଞାନିକମାନେ କହିଲେ, ମଣିଷର ଚିନ୍ତା ଓ ଚେତନାକୁ ଗ୍ରହଣ କରିପାରୁଥିବା ସେଇ ଯନ୍ତ୍ର ପାଖକୁ ଯିବ କିଏ ?

ଡ଼ି: ଜି: ସାହେବ ବୈଠକ ମଝିରେ ଚୁରଟ୍ ଟାଣି ବାହାରେ ବ୍ୟସ୍ତ ହୋଇ ଏକା ଏକା ବୁଲୁଥିଲେ । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଫୁଲମଣି ଉପରେ । ତାକୁ ପାଖକୁ ଡ଼ାକି କହିଲେ, "ଫୁଲମଣି, ସେଇ ପାଖ ଘର ଓଳେଇବା ବେଳେ ମେସିନ୍‌ରୁ ଖଣ୍ଡେ କାଚ ପାତ୍ର ଖସି ଯାଇଛି । ତୁ ଯାଇ ତାକୁ ଖଞ୍ଜି ଦେଇ ଆ ।"

ଫୁଲମଣି ସେଇ କୋଠରୀକୁ ଯାଇ କାଚ ପାତ୍ରଟି ଗୋଟାଏ ମେସିନ୍ ପାଖରେ ପଡ଼ିଥିବା ଦେଖିଲା । ଡ଼ି: ଜି: ଙ୍କ ନିର୍ଦ୍ଦେଶରେ ତାକୁ ପାଖ ଯନ୍ତ୍ରରେ ଖଞ୍ଜି ଦେଲା ।

ମେସିନ୍‌ରେ ଆଭରଣ ଖଞ୍ଜିବା ବେଳେ, ସମଗ୍ର ଯନ୍ତ୍ରର ଭବବୋଧ, ଅର୍ଥାତ୍ ଯେଉଁ ମାନବୀୟ ଇଂପଲ୍‌ସ ମାନ ସୌନ୍ଦର୍ଯ୍ୟ ବୋଧର କାରଣ ସେ ସବୁ ତୀବ୍ର ହୋଇ ରୋବର୍ଟର ତେଜସ୍କ୍ରୀୟ ଚେତନାର ପରିଧିକୁ ଚାଲି ଆସିବାକ୍ଷଣି ତତ୍‌କ୍ଷଣାତ୍ ଫୁଲମଣିର ମନର ସମଗ୍ର ଚେନତାକୁ, ଯନ୍ତ୍ର ଆଙ୍ଗିକ ଚେତନାରେ ଭର୍ତ୍ତି କରି

ନେଲ । ଅର୍ଥାତ୍ ସମଗ୍ର ସେବର୍ଟର ସୌନ୍ଦର୍ଯ୍ୟବୋଧ ବର୍ତ୍ତମାନ ଫୁଲମଣିର ମାନସିକତାରେ ସମ୍ପୂର୍ଣ୍ଣ ପ୍ରଭାବିତ ହୋଇ ଗଲା । ଜାପାନ ଓ ଆମେରିକୀୟ ବୈଜ୍ଞାନିକ ମାନେ ସୂକ୍ଷ୍ମାତିସୂକ୍ଷ୍ମ ମାଇକ୍ରୋ ଚିପସ୍ ମଧ୍ୟରେ, ଖଞ୍ଜିଥିବା ମାନବୀୟ ଆବେଦନର ପ୍ରଚ୍ଛନ୍ନ ପ୍ରଭାବରେ ଫୁଲମଣି ମଧ୍ୟ, ଏକ ସ୍ୱପ୍ନାବିଷ୍ଟ ଆବେଶ ଅନୁଭବ କଲା ।

ଡ଼ି: ଜି: ସାହେବ ଫୁଲମଣିକୁ ଶହେ ଟଙ୍କିଆ ନୋଟ୍‌ଟିଏ ଦେଇ କହିଲେ ଯାଆ, ଲୁଗାଟିଏ କିଣିବୁ । ତାପରେ ଡ଼ି: ଜି: ବୈଠକରେ ଘୋଷଣା କଲେ ଯେ, ମେସିନ୍‌ରେ ଆଭରଣ ଖଞ୍ଜା ସରିଛି । ସମସ୍ତେ ପ୍ରଶ୍ନ କଲେ ତାହା ସମ୍ଭବ ହେଲା କେମିତି ? ଡ଼ି: ଜି: ତାହାର ଉତ୍ତର ଦେଇ ନଥିଲେ ।

ସେ ଘରକୁ ଫେରିବା ବେଳେ, ଗୋଟାଏ ପୁରୁଣା ମନ୍ଦିର ଦେଇ ଆସେ । ସେଇଠି ସେ ପ୍ରତ୍ୟହ ଦେଖେ କେଉଁ କାଳରୁ ପକ୍ଷୀ-ପୁରୀଷ ଜାତ ଅଶ୍ୱତ୍ଥ ଗଛଟିଏ, ମନ୍ଦିର ଗାତ୍ରରେ ଭଙ୍ଗା ନାରୀମୂର୍ତ୍ତିର ଭଗ୍ନ ହସ୍ତରେ, ସେମିତି ପାଞ୍ଚଟି ପତ୍ରସହ ଅତ୍ୟନ୍ତ ଦୟନୀୟ ହୋଇ ରହିଛି । ତଥାପି ବୃକ୍ଷଟି ପଥର ହାତର ପାଞ୍ଚ ଆଙ୍ଗୁଳି ଭେଦି ବଞ୍ଚିଛି । ଫୁଲମଣି ସେଇ ପଥର ହାତଟିକୁ ଓଟାରି ଆଣିଲା ଏବଂ ସିଧା ଧାଇଁଲା ବିଜ୍ଞାନ ଭବନ । ସେଇଠି କାଉଣ୍ଟର୍‌ରେ ଯେମିତି ଦେଇଛି ଲୋକଟି ପଚାରିଲା "ଏଇ ଅଦ୍‌ଭୁତ ବନ୍ ସାଇ କାହାର ?" ଫୁଲମଣି କହିଲା ଲେଖ "ଫୁଲମଣି, ଯମୁନା ନଗର ।"

ଆରଦିନ ସକାଳୁ ଫୁଲମଣି ମାଆଙ୍କର ଗାଧୁଆ ପାଧୁଆ ସାରି, ମଇଳା ଗାମ୍ଛୁଆ ଧରି ଚାଲିଲା ବିଜ୍ଞାନ ଭବନକୁ । ସେଇଠି ଦେଖିଲା ଦେଶ ବିଦେଶର ଲୋକ ଠୁଳ ହୋଇଛନ୍ତି । ଚତୁର୍ଦ୍ଦିଗରେ ଫୁଲ ଆଉ ଫୁଲ । ମଞ୍ଚ ତିଆରି ହେଉଛି, ଫୁଟେ ବହଳର ଗୋଲାପ ପାଖୁଡ଼ା ମଞ୍ଚଯାଏଁ ଲାଲ୍ କାରପେଟ ଉପରେ ବିଛାଯାଇଛି । ସୁନ୍ଦର ସୁନ୍ଦର ସ୍ତ୍ରୀ ପୁରୁଷ ପୁଅଝିଅ, ଚମତ୍କାର ପୋଷାକ ମାନ ପିନ୍ଧି ବସିଛନ୍ତି । ଫୁଲମଣି ଭାବିଲା "କେଡ଼େ ସୁନ୍ଦର ଏଇ ପୃଥିବୀ, କେଡ଼େ ସୁନ୍ଦର ଏଇ ମଣିଷମାନେ, ଭଗବାନ କେତେ ସୁନ୍ଦର କରି ଗଢିଛନ୍ତି ଏମାନଙ୍କୁ ।"

ତାପରେ ରାଜକୁମାରୀ ଆସିଲେ । ଅନେକ ଗାଡ଼ି ଆସିଲା । ରାଷ୍ଟ୍ରପତି ଆସିଲେ, ପ୍ରଧାନମନ୍ତ୍ରୀ ଆସିଲେ । ପୋଲିସ ବାଲା, ସିଟି ବଜାଇ ରାସ୍ତା ଆବୋରି ନେଲେ । ଫୁଲମଣି ରାଜକୁମାରୀଙ୍କୁ ଦେଖିଲା, ଗୋଲାପର ରଙ୍ଗରେ ତିଆରି କଣ୍ଢେଇଟିଏ । ସତରେ ସୌନ୍ଦର୍ଯ୍ୟ ମାନେହିଁ ସେଇ, ରାଜକୁମାରୀ ।

କିଛିକ୍ଷଣ ପରେ ସଭା ଆରମ୍ଭ ହେଲା । ଶ୍ରୀମତୀ ଲାଲ, ଡ଼ି.ଜି ଙ୍କର ପତ୍ନୀ ସୁଚିତ୍ରା ଦେବୀ ଆଗ ଧାଡ଼ିରେ, ଅନ୍ୟ ବିଦେଶୀ ପ୍ରତିଯୋଗୀମାନଙ୍କ ସହ, ଚକ୍ ଚକ୍ ଜରିକାମର ଶାଢୀମାନ ପିନ୍ଧି ବସିଥାନ୍ତି ।

ପ୍ରାରମ୍ଭରେ ରେବୋଟ୍ ସାହାଯ୍ୟରେ ନିର୍ବାଚିତ ସର୍ବଶ୍ରେଷ୍ଠ ପୁଷ୍ପ, ତଥା ବନ୍ସାଇର ଆଜି ଘୋଷଣା ହେବ । ସମସ୍ତେ ଉତ୍କର୍ଣ୍ଣ । ମାଇକ୍‌ରେ ଘୋଷଣା କରାହେଲା, ଏ ବର୍ଷର ସର୍ବଶ୍ରେଷ୍ଠ ପୁରସ୍କାର ମିଳିଛି ଭାରତର ଫୁଲମଣିଙ୍କୁ । ବନ୍-ସାଇରେ ମଧ୍ୟ ତାଙ୍କର ଅଶ୍ୱତ୍‌ଥ ବୃକ୍ଷକୁ ରେବୋଟ୍ ସର୍ବଶ୍ରେଷ୍ଠ ଘୋଷଣା କରିଛି । ଫୁଲମଣି, ଯମୁନା ନଗର ଦିଲ୍ଲୀଙ୍କୁ ଅନୁରୋଧ ସେ ରାଜକୁମାରୀଙ୍କ ଠାରୁ ମାନପତ୍ର ଫଳକ ଏବଂ ଦଶଲକ୍ଷ ଡଲାର ଗ୍ରହଣ କରିବାକୁ ମଞ୍ଚକୁ ଆସନ୍ତୁ ।

ମଇଳା ଗାଣ୍ଡୁଆ ଧରି ଏଭଳି ସଂଭ୍ରାନ୍ତ ସମ୍ମିଳନୀରେ ବୁଲୁଥିବା ଫୁଲମଣିକୁ ଏ ମଧ୍ୟରେ ଗୋଟାଏ କନେଷ୍ଟବଳ ପାହାରେ ଦେଇ, ଓଟାରି ନେଇଯାଇଥାଏ ବାହାରକୁ ।

ସବୁଆଡ଼େ ଚହଳ ପଡ଼ିଲା "ଏଇ ଫୁଲମଣି କିଏ ?" ହୁଏତ କେଉଁ ଶିଳ୍ପ-ପତିଙ୍କର ସ୍ତ୍ରୀ ହୋଇଥିବ ବା କେଉଁ ଡ଼ିପ୍ଲୋମାଟ୍‌ଙ୍କର କନ୍ୟା !

ଆୟୋଜନକାରୀମାନେ ଫୁଲମଣିକୁ ଖୋଜୁଥାନ୍ତି । କାଉଣ୍ଟର୍‌ରେ ବସୁଥିବା ଲୋକଟି ହିଁ ପ୍ରଥମେ ବିଜ୍ଞାନ ଭବନ ବାହାରେ ଛିଣ୍ଡା କଷ୍ଟା କନା ଘୋଡେଇ ମଇଳା ଗାଣ୍ଡୁଆ ଧରି ଛିଡ଼ା ହୋଇଥିବା ଫୁଲମଣିକୁ ଦେଖି ପାରିଥିଲା । ସେ ଯାଇ ପଚାରିଲା "ଆଲୋ, ତୁ କେଉଁ ସାହେବାଣୀଙ୍କର ଫୁଲ ଆଣିଥିଲୁ, ସେ ଲଟେରୀ ପାଇଛି, ତାକୁ ଡ଼ାକି ଦେ ।"

ଫୁଲମଣି ସ୍ୱାଭାବିକ ଭାବରେ କହିଲା "ମୁଁ ପରା ଫୁଲ ଦେଇଥିଲି, ମୋ ନା ଫୁଲମଣି ।"

ଲେକଟି ତାକୁ ମଞ୍ଚ ଉପରକୁ ନେଇଗଲା । ପୃଥିବୀର ସବୁଠୁ ସୁନ୍ଦର ଫୁଲ ଉପୁଜାଇ ଥିବା ସେଇ ସମ୍ଭ୍ରାନ୍ତ ନାରୀଙ୍କ ଦର୍ଶନ ପାଇଁ ଗ୍ରରିଆଡେ ହଟ୍ଟଗୋଳ ଆରମ୍ଭ ହୋଇଯାଇ ଥାଏ ।

ନିଜର ଦିହକୁ ନୁଗ୍ରଇବାର ବ୍ୟର୍ଥ ଚେଷ୍ଟାରେ ଗୋଟାଏ ହାତକୁ ଲୁଗା କାନିକୁ ଧରି, ଗାଣ୍ଡୁଆଟିକୁ ତଳେ ରଖିଦେଇ, ଫୁଲମଣି, ସେଇ ସୁରଭୀତ ମଞ୍ଚ ଦିଗକୁ ଲେକଟି ସହ ଆସିଲା ।

ସମଗ୍ର ସଭା ନିର୍ବାକ୍ । କିନ୍ତୁ ରାଜକୁମାରୀ ଅତି ସାବଲୀଳ ହସ ହସ ମୁହଁରେ ନିଜର ଆସନ ଛାଡ଼ି, ଫୁଲମଣିକୁ ପାଛୋଟି ନେଇ, ଏକ ଅଭିଭୂତ ଆବେଗରେ କହିଲେ, "ପୁଷ୍ପପ୍ରେମୀ ଭାଇ ଓ ଭଉଣୀମାନେ, ସମଗ୍ର ବିଶ୍ୱର ସର୍ବଶ୍ରେଷ୍ଠ ପୁଷ୍ପ ପ୍ରଷ୍ଫୁଟିତ ହୁଏ, ଏଇମିତି ନିରୀହ ନାରୀର ସ୍ପର୍ଶରେ । ପୁଷ୍ପ ପୃଷ୍ଠଭୂମି—ଅନନ୍ତ କାଳରୁ ଆଜିଯାଏଁ ଆବର୍ଜନାରେ ହିଁ ସ୍ୱାଭାବିକ ।"

ସହସ୍ର କରତାଳି ମଧ୍ୟରେ ଫୁଲମଣି ଗଳାରେ ଲମ୍ବାଇ ଦେଲେ ବହୁ ରତ୍ନ ଖଚିତ ସ୍ମାରକୀୟ ରତ୍ନମାଳା ।

ସଙ୍ଗେ ସଙ୍ଗେ ଫୁଲମଣିକୁ ଘେରିଗଲେ ପାଶ୍ଚାତ୍ୟ ଦୂରଦର୍ଶନ କ୍ୟାମେରା । ଆନ୍ତର୍ଜାତୀୟ ମହିଳା ସଙ୍ଗଠନର ଜଣେ ସୁନ୍ଦରୀ ପ୍ରତିନିଧି ଫୁଲମଣିକୁ ପ୍ରଶ୍ନ କଲେ, "ମହାଶୟା, ଆପଣଙ୍କର ପୁଷ୍ପପ୍ରୀତି କେତେ ଦିନର ? ଆପଣଙ୍କର ବଂଶରେ ପୁଷ୍ପବିଥୀକା ପାଇଁ ଅନୁରାଗ କେବେଠୁଁ ଅଛି ? ଆପଣ ଯଦି ଆପଣଙ୍କର ଫୁଲ ବଗିଚ୍ଚର ସମ୍ପୂର୍ଣ୍ଣ ଡକୁମେଣ୍ଟେସନ୍ ପାଇଁ ଆମର ସଂସ୍ଥାକୁ, ଏକ୍ସକ୍ଲୁଶିଭ୍ ଅଧିକାର ଦିଅନ୍ତି, ତେବେ ତାର ଟେଲିକାଷ୍ଟ ପାଇଁ, ଆମେ ଏକ ଲକ୍ଷ ଡଲାର୍ ଦେବୁ ।"

ଆନ୍ତର୍ଜାତୀୟ ରସାୟନିକ ସାର ପ୍ରସ୍ତୁତକାରୀଙ୍କ ପ୍ରତିନିଧି ପଗ୍ରରୁଥିଲେ, "ମିସ୍ ଫୁଲମଣି, ଆପଣ ଫୁଲମାନଙ୍କରେ କି କି ସାର ପ୍ରୟୋଗ କଲେ ତାର ତଥ୍ୟ ପ୍ରଦାନ କଲେ ଆମ ତରଫରୁ ସମଗ୍ର ବିଶ୍ୱ ଭ୍ରମଣ ପାଇଁ ଆମେ ସ୍ୱତନ୍ତ୍ର ବିମାନ ଯୋଗାଇ ଦେବୁଁ ।"

ଏମିତି ଅନେକ ଅନେକ ଅଜବ ପ୍ରଶ୍ନମାନ ଶୁଣି, ଫୁଲମଣି, ବୋକା ହୋଇ

ଅନାଉଥିଲା, ସୁନ୍ଦର ପୃଥିବୀକୁ ଆଉ ଥରେ—ଟି.ଭି:କ୍ୟାମେରାରେ ଚକ୍ ଚକ୍ କରୁ-ଥାଏ—ଦୁଇ ଧାର ଲୁହ ।

× × × ×

ମୋର କାହାଣୀ ସେଇଠି ସରିଲା । କିନ୍ତୁ ତହିଁ ଆରଦିନ ଗୋଟାଏ ଘଟଣା ଘଟିଲା ଯାହାକି ନ କହିଲେ, କଥାଟି ଅସଂପୂର୍ଣ୍ଣ ରହିଯିବ । ଭାରତୀୟ ନାରୀ ସଙ୍ଗଠନ, ଶ୍ରୀମତୀ ସୁଚିତ୍ରା ଦେବୀଙ୍କର ନେତୃତ୍ୱରେ, ଗୋଟାଏ ବୈଠକ ଡ଼କାଇ-ଥିଲେ । ଉ' ସଂସ୍ଥାର ମୁଖ୍ୟ ଭାବରେ ଡ଼ି. ଜି: ସାହେବ ପୁଷ୍ପ ପ୍ରଦର୍ଶନୀରେ ଫୁଲମଣିର ପୁରସ୍କାର ପାଇବା ଘଟଣା ତାଙ୍କ ସ୍ତରରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ତାହାର ସଂକ୍ଷିପ୍ତ କଥା ଶ୍ରୀମତୀଙ୍କୁ ଜଣାଇଥିଲେ ।

ସୁଚିତ୍ରା ଦେବୀ କହିଲେ ଉ' ସଂସ୍ଥା ଅନୁସନ୍ଧାନରେ ଜାଣିଛି ଯେ, ଫୁଲମଣି ନିଜ ପୁଅର ଶବ ଉପରେ ଫୁଲଗଛ ଲଗାଇଥିଲା । ବୈଜ୍ଞାନିକମାନେ ଜାଣିପାରିଛନ୍ତି ଯେ, ମଣିଷ ଶରୀର, ଫୁଲ ପାଇଁ ଅତି ଚମତ୍କାର ଜୈବିକ ଉପଜୀବ୍ୟ ।

ଦ୍ୱିତୀୟରେ, ଫୁଲମଣି, ପ୍ରତିଦିନ ଫୁଲଗଛ ମୂଳରେ କାନ୍ଦୁଥିଲା । ଏବେ ପରୀକ୍ଷାରେ ଜଣାଯାଉଛି ଯେ, ଲୁହ, ଫୁଲର ଏକ ସୁନ୍ଦର ଫର୍ଟିଲାଇଜିଂ ଏଜେଣ୍ଟ । ମୋତେ ଯଦି ଏ କଥା ଆଗରୁ ଜଣାଥାଆନ୍ତା ତେବେ ମୁଁ ଦେଶର ସବୁ ପୋଲିସ ଷ୍ଟେସନକୁ ଗୋଟାଏ ଗୋଟାଏ ପତ୍ର ପଠାଇ ଅଭିଯୁକ୍ତ ଓ ବିଚାର ଅପେକ୍ଷାରେ ଥିବା ଆସାମୀମାନଙ୍କୁ ପୋଲିସ ବାବୁମାନେ ବାଡ଼େଇବା ବେଳର ଲୁହ ସବୁ ସଂଗ୍ରହ କରିଥାଆନ୍ତି । ହୁଏତ ଏତେ ପରିମାଣ ଲୁହରେ ସମଗ୍ର ଫୁଲ ବଗିଚାକୁ ଓଭରହେଡ଼ ଟେଙ୍କ ଦ୍ୱାରା ଲୁହ ସେଚନ କରାଯାଇ ପାରିଥାଆନ୍ତା ।

ବୈଠକ ମଝିରେ ଜଣେ କନେଷ୍ଟବଲ୍ ଆସି ଖବର ଦେଲା, ଡ଼ି. ଜି: ସାହେବଙ୍କ ମାଆ ଗତ ରାତିରୁ ମରିପଡ଼ିଛନ୍ତି ।

ବୈଠକ ସରିଲା, ସୁଚିତ୍ରା ଦେବୀ, କୋକେଇ କାନ୍ଧେଇବା ପାଇଁ ଯାଉଥିବା ତାଙ୍କ ସ୍ୱାମୀଙ୍କ ପାଖକୁ ଯାଇ କହିଲେ "ମାଆଙ୍କୁ ଏଇ ଫୁଲ ବଗିଚାରେ କବର ଦେଲେ ତୁମର କିଛି ଆପତ୍ତି ଅଛି ?"





## ଉତ୍ତମ କୁମାର ପ୍ରଧାନ

ଜନ୍ମ, ୧୯୪୭ ମସିହା ସେପ୍ଟେମ୍ବର ଅଣତିରିଶ ଭାଦ୍ରବ ପୂର୍ଣ୍ଣିମା, ସ୍ଥାନ - କଳାହାଣ୍ଡି, ଗ୍ରାମ କଣ୍ଟାମାଳ । ଭବାନୀପାଟଣାରେ ବିଦ୍ୟାଳୟ ଶିକ୍ଷା ସମାପ୍ତି ପରେ, ରେଭେନ୍ସା କଲେଜରୁ ଅର୍ଥନୀତିରେ ସ୍ନାତକୋତ୍ତର ଡିଗ୍ରୀ ଲାଭ । ୧୯୭୧ ରେ ଓଡିଶା ପ୍ରଶାସନିକ ସେବା ଏବଂ ୧୯୭୩ ରେ ଓଡିଶା ଅର୍ଥସେବାରେ ଯୋଗଦାନ । ବର୍ତ୍ତମାନ ବାଣିଜ୍ୟକର ବିଭାଗର ସହକାରୀ କମିସନର ଭାବରେ ଅବସ୍ଥାପିତ ।

ତାଙ୍କର ପ୍ରଥମ ପୁସ୍ତକ "ବୁଢ଼ିଆଣୀ ଓ ବୃଦ୍ଧ ପ୍ରଜାପତି" ୧୯୮୧ ମସିହାରେ ପ୍ରକାଶିତ । ଦ୍ୱିତୀୟ ପୁସ୍ତକ "ନଚିକେତାର ହାତ" ୧୯୮୮ ରେ ପ୍ରକାଶିତ । ସେଇବର୍ଷ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଗଳ୍ପ ବିଭାଗରେ ସର୍ବଶ୍ରେଷ୍ଠ ପୁସ୍ତକ ଭାବରେ 'ନଚିକେତାର ହାତ' ପୁରସ୍କୃତ ।